ହଂସ ମେହେତା

ଚିତ୍ର :
ସୁକୁମାର ଚଟାର୍ଜୀ

ଅନୁବାଦ :
ମିତ୍ରା ଦାସ

First Edition 1975 (*Saka* 1897)

Second Edition 1983 (*Saka* 1905)







Prince of Ayodhya (Oriya)

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନୂଆ ଦିଲ୍ଲୀ



## ରାମଙ୍କର ଜନ୍ମ ଓ ବିବାହ

ବହୁତ ବର୍ଷ ପୂର୍ବେ ସରଯୂ ନଦୀ କୂଳରେ ଅଯୋଧ୍ୟା ନାମରେ ଗୋଟିଏ ସୁନ୍ଦର ନଗରୀ ଥିଲା । ସେଇ ନଦୀର ପାଣି କୁଳୁ କୁଳୁ ଶବ୍ଦ କରି କୂଳରେ ବାଡ଼େଇ ହେଉଥିଲା । ନଦୀ ପାଣିରେ ନଦୀକୂଳର ବଗିଚା, କୋଠା, ରାଜମନ୍ଦିର, ମକାକ୍ଷେତ ପ୍ରଭୃତିର ଛାଇ ପଡ଼ି ଠିକ୍ ଦର୍ପଣ ପରି ଦିଶୁଥିଲା । ସେହି ରାଜ୍ୟରେ ରାଜତ୍ୱ କରୁଥିଲେ ରାଜା ଦଶରଥ । ତାଙ୍କର ତିନୋଟି ରାଣୀ—କୌଶଲ୍ୟା, ସୁମିତ୍ରା, କୈକେୟୀ; କିନ୍ତୁ ସାନରାଣୀ କୈକେୟୀ ତାଙ୍କର ସବୁଠାରୁ ପ୍ରିୟ ଥିଲେ ।

ଅନେକ ଧନସମ୍ପତ୍ତି ଓ ଲୋକପ୍ରିୟତା ସତ୍ତ୍ୱେ ସନ୍ତାନ-ସନ୍ତତି ନ ଥିବାରୁ ଦଶରଥ ଖୁବ୍ ଦୁଃଖୀ ଥିଲେ । ଦିନେ ବଶିଷ୍ଠମୁନି ତାଙ୍କୁ କହିଲେ—"ତୁମେ ଯଦି 'ପୁତ୍ରକାମେଷ୍ଟି ଯଜ୍ଞ' କର ତେବେ ତୁମର ଇଚ୍ଛା ପୂର୍ଣ୍ଣ ହେବ ।" ମୁନିଙ୍କ ଉପଦେଶ ଅନୁଯାୟୀ ରାଜା ଯଜ୍ଞ କଲେ ଓ

ସମୟାନୁସାରେ ତିନିରାଣୀ ପୁତ୍ର ସନ୍ତାନ ଧାରଣ କଲେ । ଚୈତ୍ରମାସର ନବମ ଦିନରେ ରାଣୀ କୌଶଲ୍ୟା ରାମଙ୍କୁ ଜନ୍ମଦେଲେ । ଠିକ୍ ତା ପରେ ପରେ କୈକେୟୀ ଭରତଙ୍କୁ ଏବଂ ଶେଷରେ ସୁମିତ୍ରାଙ୍କ ଗର୍ଭରୁ ଜନ୍ମହେଲେ ଯମଜ ପୁତ୍ର ଲକ୍ଷ୍ମଣ ଓ ଶତ୍ରୁଘ୍ନ । ଅଯୋଧ୍ୟାରେ ଖୁବ୍ ଆନନ୍ଦ ଉତ୍ସବ ହେଲା ଓ ଦଶରଥ ଦରିଦ୍ରମାନଙ୍କୁ ବହୁତ ଖାଦ୍ୟ, ବସ୍ତ୍ର ଓ ଅର୍ଥ ବିତରଣ କଲେ ।

ବଡ଼ ହେବା ସଙ୍ଗେ ସଙ୍ଗେ ଚାରି ରାଜପୁତ୍ର ଏକ ସଙ୍ଗେ ଖୁବ୍ ଖୁସିରେ ବଗିଚା ଓ ରାଜ-ନଅରରେ ଖେଳାବୁଲା କଲେ । ସେମାନେ ପରସ୍ପରକୁ ଖୁବ୍ ସ୍ନେହ କରୁଥିଲେ ଓ ରାମଙ୍କୁ ନେତା ରୂପେ ମାନୁଥିଲେ । ରାମ, ଲକ୍ଷ୍ମଣ ଓ ଭରତ, ଶତ୍ରୁଘ୍ନଙ୍କ ଯୋଡ଼ି ଅବିଚ୍ଛେଦ୍ୟ ଥିଲା । ଚାରି ରାଜପୁତ୍ରଙ୍କ ମଧ୍ୟରୁ ରାମ ଦଶରଥଙ୍କର ସବୁଠାରୁ ପ୍ରିୟ ଥିଲେ ।

ରାଜପୁତ୍ରମାନେ ବଡ଼ ହେବାରୁ ସେମାନଙ୍କୁ ପୁରାଣ ଓ ଯୁଦ୍ଧବିଦ୍ୟା ସମ୍ବନ୍ଧରେ ଶିକ୍ଷା ଦିଆଗଲା ।

ସେମାନଙ୍କ ଯେତେବେଳେ ଷୋଳବର୍ଷ ବୟସ ସେତେବେଳେ ଥରେ ବିଶ୍ୱାମିତ୍ର ମୁନି ଦଶରଥଙ୍କ ଦରବାରକୁ ଆସିଲେ । ବିଶ୍ୱାମିତ୍ର ଏକଦା ଜଣେ ପ୍ରତାପୀ ରାଜା ଥିଲେ; କିନ୍ତୁ ପରେ ସନ୍ନ୍ୟାସୀ ଜୀବନ ଯାପନ କରିବାପାଇଁ ତାଙ୍କର ରାଜ୍ୟ ତ୍ୟାଗ କରିଥିଲେ ।

ଦଶରଥ ଖୁବ୍ ଆଗ୍ରହର ସହିତ ମୁନିଙ୍କୁ ସ୍ୱାଗତ କରି କହିଲେ, "ହେ ମହାମୁନି, ଆପଣଙ୍କ ଆଗମନ ଯୋଗୁଁ ମୁଁ ନିଜକୁ ଧନ୍ୟ ମନେ





କରୁଛୁ । ମୁଁ ଆପଣଙ୍କର କି ସେବା କରିପାରେ ? ଆପଣଙ୍କର ଯେକୌଣସି ଆଦେଶ ପାଳନ କରିବାକୁ ମୁଁ ଖୁବ୍ ଆନନ୍ଦ ଓ ଗର୍ବ ଅନୁଭବ କରିବି ।"

ବିଶ୍ୱାମିତ୍ର କହିଲେ, "ମୁଁ ଆପଣଙ୍କଠାରୁ ଯାହା ମାଗିବାକୁ ଆସିଛି ତାହା ଦେବା ଆପଣଙ୍କ ପକ୍ଷେ ସହଜ ନ ହୋଇପାରେ ।"

ଦଶରଥ ଗର୍ବର ସହିତ ଉତ୍ତର ଦେଲେ, "ଦଶରଥ କେବେହେଲେ ଆପଣଙ୍କ ଇଚ୍ଛା-ପୂର୍ଣ୍ଣ କରିବାକୁ ପଶ୍ଚାତ୍‌ପଦ ହେବ ନାହିଁ । ଆପଣ କ'ଣ ଚାହାନ୍ତି କୁହନ୍ତୁ ଓ ସଙ୍ଗେ ସଙ୍ଗେ ଆପଣଙ୍କ ଇଚ୍ଛା ପରିପୂର୍ଣ୍ଣ ହେବ ।"

ବିଶ୍ୱାମିତ୍ର ସାମାନ୍ୟ ହସି କହିଲେ, "ଆପଣଙ୍କ ପୁତ୍ର ରାମଙ୍କୁ ମତେ ଦିଅନ୍ତୁ । ଯେଉଁ ରାକ୍ଷସମାନେ ମୋ ଉପରେ ଅତ୍ୟାଚାର କରୁଛନ୍ତି ଓ ମୁଁ ପ୍ରତିଷ୍ଠା କରିଥିବା ଯଜ୍ଞର ଆୟୋଜନକୁ ଅପବିତ୍ର କରୁଛନ୍ତି, ସେହିମାନଙ୍କୁ ଧ୍ୱଂସ କରିବାପାଇଁ ମୁଁ ରାମଙ୍କର ସାହାଯ୍ୟ ଚାହେଁ ।"

ଏକଥା ଶୁଣି ଦଶରଥ ଖୁବ୍ ଦୁଃଖିତ ହେଲେ । ସେ କହିଲେ, "ରାମ ! କିନ୍ତୁ ରାମକୁ ଏ ପର୍ଯ୍ୟନ୍ତ ଷୋଳବର୍ଷ ମଧ୍ୟ ପୂର୍ଣ୍ଣ ହୋଇନି । ସେ କିପରି ଏଡ଼େ ଭୟଙ୍କର ରାକ୍ଷସମାନଙ୍କ



ସାଙ୍ଗରେ ଯୁଦ୍ଧ କରିବ ? ରାମ ପରିବର୍ତ୍ତେ ମୋତେ ଯିବାକୁ ଦିଅନ୍ତୁ ଅଥବା ମୋର ସୈନ୍ୟମାନଙ୍କୁ ପଠାଇବାକୁ ଅନୁମତି ଦିଅନ୍ତୁ । ହେ ମହାମୁନି, ରାମ ବ୍ୟତୀତ ଆପଣ ଆଉ ଯାହା ଚାହିଁବେ ମୁଁ ଦେବାକୁ ପ୍ରସ୍ତୁତ ଅଛି ।"

ବିଶ୍ୱାମିତ୍ର ଖୁବ୍ ରାଗିଯାଇ କହିଲେ, "ଆପଣ ପ୍ରତିଜ୍ଞାବଦ୍ଧ ହୋଇ ମଧ୍ୟ ମୁଁ ଯାହା ଚାହୁଁଛି ଦେବାକୁ ପ୍ରସ୍ତୁତ ନୁହନ୍ତି । ମୁଁ କୌଣସି ଅସମ୍ଭବ ପଦାର୍ଥ ଚାହିଁ ନଥିଲି । ଯଦି ଧାର୍ମିକ ଜୀବନ 'ଯାପନ କରୁ ନଥାନ୍ତି ତେବେ ମୁଁ ନିଜେ ରାକ୍ଷସମାନଙ୍କୁ ମାରିପାରିଥାଆନ୍ତି ।"

ବିପଦ ଆଶଙ୍କା କରି ବଶିଷ୍ଠ ଦଶରଥଙ୍କୁ କହିଲେ, "ହେ ରାଜା, ରଘୁବଂଶର ଦାୟାଦ ହିସାବରେ ଆପଣଙ୍କର ପ୍ରତିଜ୍ଞା ରକ୍ଷା କରିବା ଉଚିତ । ଭୟ କରନ୍ତୁ ନାହିଁ । ରାମ ବିଶ୍ୱାମିତ୍ରଙ୍କ ସହିତ ଖୁବ୍ ନିରାପଦରେ ରହିବେ ଓ ସେ ତାଙ୍କ ପାଖରୁ ଅନେକ ବିଷୟ ଶିକ୍ଷା ମଧ୍ୟ କରିପାରିବେ ।"

ଦଶରଥ ଏକଥା ଶୁଣି ବିଶେଷ ଖୁସି ହେଲେ ନାହିଁ; କିନ୍ତୁ ବିଶ୍ୱାମିତ୍ରଙ୍କୁ ଆଉ ନାହିଁ ମଧ୍ୟ କରି ପାରିଲେ ନାହିଁ । ସେ କହିଲେ, "ଲକ୍ଷ୍ମଣ ମଧ୍ୟ ସାଙ୍ଗରେ ଯାଉ ।"

ଦୁଇ ରାଜପୁତ୍ର ସେମାନଙ୍କ ପିତାମାତାଙ୍କଠାରୁ ବିଦାୟ ନେଇ ବିଶ୍ୱାମିତ୍ରଙ୍କ ସହିତ ଯିବାକୁ ବାହାରିଲେ । ଖୁବ୍ ଶୀଘ୍ର ସେମାନେ ଗୋଟିଏ ଅନ୍ଧକାରପୂର୍ଣ୍ଣ ଏବଂ ଭୟଙ୍କର ସ୍ଥାନରେ ପହଞ୍ଚିଲେ ।



ମୁନି କହିଲେ, "ଏହିଠାରେ ତାଡ଼କା ରାକ୍ଷସୀ ବାସ କରେ । ସେ ଏଠାରେ ସବୁ ଜୀବନ୍ତ ପ୍ରାଣୀଙ୍କୁ ମାରି ସାରିଛି ଏବଂ ସବୁ ପଥିକମାନଙ୍କୁ ଆକ୍ରମଣ କରୁଛି । ତାର ବଞ୍ଚିବାର କୌଣସି ଅଧିକାର ନାହିଁ । ରାମ ! ତାକୁ ମାରି ତୁମେ ଏହି ଗ୍ରାମାଞ୍ଚଳର ଲୋକମାନଙ୍କୁ ନିରାପଦରେ ରଖ ।"

ସେମାନେ କଥାବାର୍ତ୍ତା ହେଉଥିବା ସମୟରେ ତାଡ଼କା ଭୟଙ୍କର-ବିକଟାଳ ରଢ଼ି କରି ସେମାନଙ୍କ ଆଡ଼କୁ ମାଡ଼ି ଆସିଲା । ରାମ ଓ ଲକ୍ଷ୍ମଣ ଯୁଦ୍ଧ କରି ତାକୁ ମାରିଦେଲେ । ଏହା ଦେଖି ବିଶ୍ୱାମିତ୍ର ଖୁବ୍ ଖୁସୀ ହେଲେ । ସେ ସେମାନଙ୍କୁ ବିଶିଷ୍ଟ ଅସ୍ତ୍ର ସବୁ ଦେଇ ତାକୁ କିପରି ବ୍ୟବହାର କରିବାକୁ ହୁଏ ଶିଖାଇଦେଲେ । ଶେଷରେ ସେମାନେ ବିଶ୍ୱାମିତ୍ରଙ୍କ ଆଶ୍ରମ 'ସିଦ୍ଧାଶ୍ରମ'ରେ ପହଞ୍ଚିଲେ ।

ମୁନି ଦୁଇ ରାଜପୁତ୍ରଙ୍କୁ ଚାରିଆଡ଼େ ନଜର ରଖିବାକୁ କହି ନିଜର ଯଜ୍ଞ ଆରମ୍ଭ କଲେ । ପ୍ରଥମ କିଛିଦିନ ସବୁ ଠିକ ମତେ ଚାଲିଲା; କିନ୍ତୁ ଷଷ୍ଠଦିନ ସୁବାହୁ ଓ ମାରୀଚ ନେତୃତ୍ୱରେ ରାକ୍ଷସମାନେ ଆସିଲେ । ରାମ ଆଦୌ ଭୟଭୀତ ନ ହୋଇ ସେମାନଙ୍କ ପାଖକୁ ଆସି

ନିଜର ଧନୁ ଉଠାଇ ମାରୀଚକୁ ଶର ନିକ୍ଷେପ କଲେ । ସେହି ଶର ସିଧା ତାର ଲକ୍ଷ-ସ୍ଥଳରେ ଏତେ ଜୋର୍‌ରେ ବାଜିଲା ଯେ ମାରୀଚ ଶରବିଦ୍ଧ ହୋଇ ଅନେକ ଦୂରରେ ପଡ଼ିଲା । ତାପରେ ରାମ ଆଉ ଗୋଟିଏ ଶରରେ ସୁବାହୁର ପ୍ରାଣ ନେଲେ । ଏହା ଦେଖି ଅନ୍ୟ ରାକ୍ଷସମାନେ ଭୟରେ ଚିତ୍କାର କରି ଜୀବନ ରକ୍ଷା କରିବାକୁ ପଳେଇଲେ ।

ବିଶ୍ୱାମିତ୍ର ଶାନ୍ତିରେ ତାଙ୍କର ସବୁ କର୍ମ ସାରିବାକୁ ସମର୍ଥ ହେଲେ । ତାଙ୍କର କର୍ତ୍ତବ୍ୟ-ପାଳନ କରିସାରିବା ପରେ ରାମ ଋଷିଙ୍କୁ ପଚାରିଲେ, "ହେ ମୁନିବର, ଆମେ ଆପଣଙ୍କର ଆଉ କିଛି ସେବା କରିପାରୁ କି ?"

ମୁନି ଉତ୍ତର ଦେଲେ, "ମୁଁ ତୁମ ଦୁଇଜଣଙ୍କ ଉପରେ ଖୁବ୍ ପ୍ରସନ୍ନ । ତୁମମାନଙ୍କୁ ମୋ ସହିତ ବିଦେହର ରାଜା ଜନକଙ୍କ ଦରବାରକୁ ନେବାକୁ ଚାହୁଁଛି । ସେ ନିକଟରେ ଖୁବ୍ ଆଡ଼ମ୍ବରପୂର୍ଣ୍ଣ ଧାର୍ମିକ ଉତ୍ସବ ସମ୍ପାଦନ କରିବାକୁ ଯାଉଛନ୍ତି । ମୁଁ ମୋର ଶିଷ୍ୟମାନଙ୍କ ସହ ଯାଉଅଛି । ତୁମେମାନେ ମଧ୍ୟ ମୋ ସଙ୍ଗରେ ଯାଇ ଜନକଙ୍କ ଅଦ୍ଭୁତ ଧନୁ 'ହରଧନୁ' ଦେଖିଆସ ।"

ତାପରେ ସେମାନେ ବିଦେହ ଗଲେ । ଜନକ ତାଙ୍କର ଅତିଥିମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣେଇଲେ । ସେ ପଚାରିଲେ, "ହେ ମହାଋଷି, ଏଇ ସୁନ୍ଦର ଯୁବକ ଦୁଇଜଣ କିଏ ?"

ବିଶ୍ୱାମିତ୍ର କହିଲେ, "ସେମାନେ ଅଯୋଧ୍ୟାର ରାଜା ଦଶରଥଙ୍କର ପୁତ୍ର—ରାମ ଓ ଲକ୍ଷ୍ମଣ । ମୁଁ ସେମାନଙ୍କୁ ଆପଣଙ୍କର ଅଦ୍ଭୁତ 'ହରଧନୁ' ଦେଖାଇବାପାଇଁ ସାଙ୍ଗରେ ଆଣିଛି ।"

ରାଜା ଜନକ ଦୁଇରାଜପୁତ୍ରଙ୍କୁ 'ହରଧନୁ' ଦେଖାଇବାପାଇଁ ତାଙ୍କ ଭୃତ୍ୟମାନଙ୍କୁ ଆଦେଶ ଦେଲେ ।

ସେହି ଧନୁଟି ଆଠଚକ ବିଶିଷ୍ଟ ଏକ ଶକଟରେ ଗୋଟିଏ ବିରାଟ ଲୁହାର ସିନ୍ଦୁକ ଭିତରେ ରଖା-



ଯାଇଥିଲା ଏବଂ ତାକୁ ଜଣେ ଖୁବ୍ ବଳବାନ୍ ବ୍ୟକ୍ତି ଠେଲୁଥିଲା ।

ଜନକ ବିଶ୍ୱାମିତ୍ରଙ୍କୁ କହିଲେ, "ଯିଏ ଏଇ ଧନୁକୁ ବଙ୍କା କରି ଖିଞ୍ଚିଦେଇ ପାରିବ ତା ସହିତ ମୋର କନ୍ୟା ସୀତାର ବିବାହ ଦେବି ବୋଲି ମୁଁ ପ୍ରତିଜ୍ଞା କରିଛି । ଅନେକ ନାମଜାଦା ରାଜପୁତ୍ର ଚେଷ୍ଟାକରି ବିଫଳ ହୋଇଛନ୍ତି । ଏଇ ଯୁବକ ଦୁଇଜଣଙ୍କ ମଧ୍ୟରୁ କେହି ଚେଷ୍ଟା କରିବାକୁ ଚାହାନ୍ତି କି ?"

ବିଶ୍ୱାମିତ୍ର ରାମଙ୍କୁ ଚାହିଁ କହିଲେ, "ଆସ ବତ୍ସ, 'ହରଧନୁ'କୁ ଥରେ ଦେଖ ।"

ରାମ ଆଗକୁ ଆସି ସିନ୍ଦୁକଟିକୁ ଖୋଲି

ପଗ୍ଭରଲେ, "ମୁଁ ଏହାକୁ ଉଠାଇ ଏଥିରେ ଶର ଯୋଖିବି କି ? "ନିଶ୍ଚୟ", କହିଲେ ମୁନି, "ତୁମେ ଯଦି ତାହା କରିବାକୁ ସକ୍ଷମ ହୁଅ ।"

ରାମ ଖୁବ୍ ସହଜରେ ଧନୁଟିକୁ ଉଠାଇଲେ । ସେ ଧନୁଟିକୁ ବଙ୍କେଇ ତାର ରଜ୍ଜୁଟିକୁ ଏତେ ଜୋର୍‌ରେ ଟାଣି ଧରିଲେ ଯେ ଧନୁଟି ଦୁଇଖଣ୍ଡ ହୋଇ ଭାଙ୍ଗିଗଲା । ସମସ୍ତେ ରାମଙ୍କ ଆଡ଼କୁ ବିସ୍ମୟର ସହିତ ଅନାଇ ରହିଲେ ।

ଜନକଙ୍କ ଖୁସିର ସୀମା ରହିଲା ନାହିଁ । ଶେଷରେ ସେ ସୀତାଙ୍କ ପାଇଁ ଯୋଗ୍ୟ ପାତ୍ରଟିଏ ପାଇଛନ୍ତି । ଏହା ଶୁଣି ବିଦେହ ନଗର ଉତ୍ସବ ମୁଖରିତ ହୋଇ ଉଠିଲା । ଦଶରଥଙ୍କ ନିକଟକୁ ଏ ଶୁଭଖବର ପଠାହେଲା ଓ ତାଙ୍କର ଆଶୀର୍ବାଦ ଭିକ୍ଷା କରି ରାମ ଓ ସୀତାଙ୍କ ବିବାହ ପାଇଁ ବିଦେହକୁ ଆସିବାପାଇଁ ଅନୁରୋଧ କରି ଜନକ ଦୂତ ପଠାଇଲେ ।

ଦଶରଥ, ଭରତ ଓ ଶତ୍ରୁଘ୍ନ ଅନୁଚରଗଣଙ୍କ ସହ ଆସି ପହଞ୍ଚିଲେ । ସମସ୍ତେ ଖୁବ୍ ଆନନ୍ଦିତ ହେଲେ । ଚାରି ରାଜପୁତ୍ରଙ୍କ ପାଇଁ ପାତ୍ରୀ ଠିକ୍ କରାହେଲା । ସୀତା ରାମଙ୍କୁ ଓ ଜନକଙ୍କ ଦ୍ୱିତୀୟା କନ୍ୟା ଊର୍ମିଳା ଲକ୍ଷ୍ମଣଙ୍କୁ ବିବାହ କଲେ । ଜନକଙ୍କ ଭାଇ କୁଶଧ୍ୱଜଙ୍କ ଦୁଇ କନ୍ୟା ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି ଯଥାକ୍ରମେ ଭରତ ଓ ଶତ୍ରୁଘ୍ନଙ୍କୁ ବିବାହ କଲେ ।

ଜନକ ସୀତାଙ୍କୁ ଆଶୀର୍ବାଦ କରି କହିଲେ, "ତୁମେ ସର୍ବଦା ରାମଙ୍କର ଛାୟା ରୂପେ ରହିଥାଅ ।" ତାପରେ ସମସ୍ତେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲେ । ଅଯୋଧ୍ୟାର ନାଗରିକଗଣ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣେଇଲେ ।

ବର୍ଷ ବିତିବା ସଙ୍ଗେ ସଙ୍ଗେ ରାଜପୁତ୍ରମାନେ ଖୁବ୍ ବୀର ଓ କର୍ତ୍ତବ୍ୟପରାୟଣ ଭାବେ ବଢ଼ି ଉଠିଲେ । ଦଶରଥଙ୍କର ବାର୍ଦ୍ଧକ୍ୟ ଆସିଯାଇଥିଲା ଓ ସେ ଅନେକ ରାଜକୀୟ କାର୍ଯ୍ୟ ରାମଙ୍କୁ ସମର୍ପଣ କରିଥିଲେ । ଅଯୋଧ୍ୟାର ନାଗରିକମାନେ ଓ ରାଜଦରବାରର ସଦସ୍ୟମାନେ ରାମଙ୍କୁ ଖୁବ୍ ସ୍ନେହ କରୁଥିଲେ । ଦଶରଥଙ୍କ ପରି ରାମ ସେମାନଙ୍କ ପ୍ରାଣଠୁ ବଳି ଆହୁରି ପ୍ରିୟ ଥିଲେ ।

ଭରତ ଓ ଶତ୍ରୁଘ୍ନ ଥରେ ଭରତଙ୍କ ମାମୁଁ ଘରକୁ ଚାଲିଯାଇଥିଲେ । କୈକେୟର ରାଜା ଭରତଙ୍କର ଅଜା ଥିଲେ । ସେହି ସମୟରେ ଦଶରଥ ରାମଙ୍କୁ ରାଜା କରିବା ପାଇଁ ଅଭିଷେକ କରିବାକୁ ସ୍ଥିର କଲେ ।

ଦଶରଥ ତାଙ୍କର ମନ୍ତ୍ରୀ, ଅଧସ୍ତନ କର୍ମଚାରୀ ଓ ରାଜପରିବାରର ଅନ୍ୟାନ୍ୟ ସଦସ୍ୟମାନଙ୍କୁ ଡକାଇଲେ ।

ଖୁବ୍ ଗମ୍ଭୀର ସ୍ୱରରେ ଦଶରଥ ସେମାନଙ୍କୁ କହିଲେ, "ଏତେ ବର୍ଷ ପର୍ଯ୍ୟନ୍ତ ମୁଁ ଆପଣମାନଙ୍କ ଉପରେ ରାଜତ୍ୱ କରିଥିଲି ଓ ଆପଣମାନଙ୍କର ଭଲମନ୍ଦ ବୁଝିଥିଲି । ବର୍ତ୍ତମାନ ମୁଁ ବୃଦ୍ଧ ଓ ଦୁର୍ବଳ । ମୋର ବର୍ତ୍ତମାନ ବିଶ୍ରାମ ଦରକାର । ମୋର ପୁତ୍ର ରାମ ମୋର ଉତ୍ତରାଧିକାରୀ ହେବାକୁ ଯୋଗ୍ୟ । ଆପଣମାନେ ଯଦି ସମ୍ମତ ହୁଅନ୍ତି ତେବେ ମୁଁ ରାମଙ୍କୁ ରାଜା କରି ମୋର କର୍ତ୍ତବ୍ୟଭାର ଅର୍ପଣ କରିବି । ଏ ବିଷୟରେ ମୋର କଣ କରିବା ଉଚିତ ଆପଣମାନେ କୁହନ୍ତୁ । ଆପଣମାନଙ୍କ ମତକୁ ମୁଁ ମାନିନେବି ।"

ଦଶରଥଙ୍କ କଥାକୁ ରାଜଦରବାରର ସମସ୍ତେ ଖୁବ୍ ଆନନ୍ଦର ସହିତ ଅନୁମୋଦନ କଲେ । ତାପରେ ରାଜା କହିଲେ, "ହେ ମୋର ପ୍ରିୟ ପ୍ରଜାଗଣ, ଶୁଭକାର୍ଯ୍ୟରେ ବିଳମ୍ବ କରିବା ଉଚିତ ନୁହେଁ । ଆସନ୍ତାକାଲି ସକାଳେ ଏ ଉତ୍ସବ ପାଳନ କରାଯାଉ ।"

ଏ ଖବର କ୍ଷଣକରେ ବ୍ୟାପିଗଲା ଓ ଅଯୋଧ୍ୟାନଗରୀ ଫୁର୍ତ୍ତିରେ ଚଞ୍ଚଳ ହୋଇ ଉଠିଲା । ଏହି ଶୁଭ ଖବର ବିଷୟରେ ଚର୍ଚ୍ଚା କରିବାକୁ ରାସ୍ତା ଜନାକୀର୍ଣ୍ଣ ହୋଇ ଉଠିଲା । ପରଦିନ ଶୁଭ ଅବସର ପାଇଁ ସାଜସଜ୍ଜା ଆରମ୍ଭ ହୋଇଗଲା ଓ ସମସ୍ତେ ପ୍ରସ୍ତୁତ ହେବାକୁ ଲାଗିଲେ ।



# ମନ୍ଥରା ଓ କୈକେୟୀ

ରାଣୀ କୈକେୟୀଙ୍କର ବାଲ୍ୟକାଳର ସେବିକା କୁଜା ମନ୍ଥରା ରାଜଭବନର ଛାତ ଉପରୁ ରାସ୍ତାର ସାଜସଜ୍ଜା ସବୁ ଦେଖୁଥିଲା । ବହୁ ପତାକା ଓ ପୁଷ୍ପମାଳ ଟଙ୍ଗା ହୋଇଥିଲା ଓ ପଦ୍ମପାଖୁଡ଼ା ସବୁ ରାସ୍ତା ଉପରେ ବିଛା ହେଉଥିଲା । କି କାରଣ ଯୋଗୁଁ ଏତେ ଆନନ୍ଦ ଉତ୍ସବ ପାଳନ କରାଯାଉଛି ଜାଣିନପାରି ସେ ରାଣୀ କୌଶଲ୍ୟାଙ୍କ ଦାସୀକୁ ପଚାରିଲା ।

"ଆମର ପ୍ରିୟ ରାମଙ୍କର କାଲି ସକାଳୁ ଅଭିଷେକ ହେଉଛି ବୋଲି ତୁ କଅଣ ଜାଣିନାହୁଁ ?"—ଉତ୍ତର ଦେଲା ଦାସୀ ।

ରାଗରେ ଅଗ୍ନିଶର୍ମା ହୋଇ ମନ୍ଥରା ସଙ୍ଗେ ସଙ୍ଗେ ବିଶ୍ରାମ କରୁଥିବା କୈକେୟୀଙ୍କ ପାଖରେ ପହଞ୍ଚିଲା ।

"ହେ ରାଣୀମା', ଶୀଘ୍ର ଉଠ"—ଚିତ୍କାର କରି କହିଲା ମନ୍ଥରା । "ଘର ବୁଡ଼ି ପାଣି ଅଣ୍ଟୁଏ ହେଲାଣି—ତୁମର ହୋସ୍ ନାହିଁ ! କାଲି ରାମଙ୍କର ଅଭିଷେକ ହେବାକୁ ଯାଉଛି ।"

କୈକେୟୀ ଏ ସମ୍ବାଦ ଶୁଣି ଖୁବ୍ ଖୁସି ହେଲେ । ସେ ନିଜ ବେକରୁ ଗୋଟିଏ ମାଳା କାଢ଼ି ମନ୍ଥରାକୁ ଦେଇ କହିଲେ, "ମନ୍ଥରା, ତୁ ଖୁବ୍ ଶୁଭ ସମ୍ବାଦ ଆଣିଛୁ । ରାମ ରାଜା ହେବା ଶୁଣି ମୁଁ ଭାରି ଖୁସି ।"

ଏହା ଶୁଣି ମନ୍ଥରା ଆହୁରି ରାଗିଗଲା । ସେ ମାଳାଟିକୁ ଦୂରକୁ ଫୋପାଡ଼ି ଦେଇ କହିଲା, "ତୁମେ ଏତେ ମୂଢ଼ ହୋଇପାର ! ତୁମେ କଣ ବୁଝିପାରୁନ ଯେ ରାମ ରାଜା ହେଲେ ଭରତ ତା'ର ଭୃତ୍ୟ ପରି ରହିବ ଓ ତୁମେ କୌଶଲ୍ୟାଙ୍କର ପ୍ରତ୍ୟକ୍ଷ ଦାସୀ ଭାବରେ ରହିବ ।"

"କି ଅସମ୍ଭବ !" କହିଲେ କୈକେୟୀ, "ରାମ ମୋତେ ତାଙ୍କ ନିଜର ମା'ପରି ଭକ୍ତି ଓ ଶ୍ରଦ୍ଧା କରନ୍ତି ଏବଂ ସବୁ ଭାଇମାନଙ୍କୁ ଖୁବ୍ ସ୍ନେହ କରନ୍ତି । ରାମଙ୍କ ପରେ ଭରତ ରାଜା ହେବ ।"

ମନ୍ଥରା ଅବଜ୍ଞାରେ ହସି କହିଲା, "ମୂର୍ଖା ସ୍ତ୍ରୀ ! ରାମଙ୍କ ପରେ ଭରତ ନୁହେଁ, ରାମଙ୍କ ପୁଅ ରାଜା ହେବ । ଭରତ ରାମଙ୍କ ଦାସ ରୂପେ ରହିବ ଓ ଖୁବ୍ ସମ୍ଭବ, ନିର୍ବାସିତ ହୋଇ ମୃତ୍ୟୁ ବରଣ କରିବ । ତୁମେ ଯଦି ସେଇଆ ଚାହଁ ତେବେ ମୋର କିଛି କହିବାର ନାହିଁ ।"

ମନ୍ଥରାର ଏହି କଥା'ଗୁଡ଼ାକ କୈକେୟୀଙ୍କ ମନରେ ଆଘାତ କଲା । ସେ ବାଢ଼ ଉଠି ମନ୍ଥରାକୁ ପଚାରିଲେ, "ମୋର ଭରତକୁ ରକ୍ଷା କରିବାକୁ ମୁଁ କ'ଣ କରିବ ?"

"ତୁମର ମନେଥିବ, ତୁମେ ଯେତେବେଳେ ଯୁଦ୍ଧଭୂମିରେ ରାଜାଙ୍କ ଜୀବନ ରକ୍ଷା କରିଥିଲ ସେ ତୁମକୁ ଦୁଇଟି ବର ଦେବା ପାଇଁ ପ୍ରତିଜ୍ଞା କରିଥିଲେ । ବର୍ତ୍ତମାନ ସେ ବର ଦୁଇଟି ମାଗ !" ଉତ୍ତର ଦେଲା ମନ୍ଥରା ।



କୈକେୟୀ ଅସହାୟ ସ୍ୱରରେ ପଚାରିଲେ, "ମୋର କ'ଣ ମାଗିବା ଉଚିତ ? ମୋର କ'ଣ କହିବା ଉଚିତ ?"

"ପ୍ରଥମ ବର ମାଗ ଯେ ରାମଙ୍କ ବଦଳରେ ଭରତ ରାଜା ହୁଅନ୍ତୁ ଓ ଦ୍ୱିତୀୟରେ ରାମ ଚଉଦବର୍ଷ ବନବାସରେ ଯାଆନ୍ତୁ । ରାମ ସେଠାରୁ ଫେରିଲାବେଳକୁ ଅଯୋଧ୍ୟାର ପ୍ରଜାଗଣ ତାଙ୍କୁ ସମ୍ପୂର୍ଣ୍ଣ ଭୁଲିଯାଇଥିବେ ।"

କୈକେୟୀ ରାଜି ହେଲେ ।

ସେହିଦିନ ସନ୍ଧ୍ୟାରେ ରାଜା ତାଙ୍କର ରାଜକାର୍ଯ୍ୟ କର୍ମ ଶେଷକରି କୈକେୟୀଙ୍କୁ ଶୁଭସମ୍ବାଦଟି ଦେବାପାଇଁ ଅନ୍ତଃପୁରକୁ ବଢ଼େଇକଲେ । ସେ ନିଶ୍ଚିତ ଥିଲେ ଯେ ରାମଙ୍କୁ ଅତ୍ୟଧିକ ସ୍ନେହ କରୁଥିବା ହେତୁ କୈକେୟୀ ଏ ସମ୍ବାଦ ଶୁଣି ଖୁସି ହେବେ; କିନ୍ତୁ ଯେତେବେଳେ ସେ କୈକେୟୀଙ୍କ ଗୃହରେ ପ୍ରବେଶ କଲେ ସେ ଦେଖିଲେ ରାଣୀ ବାଳ ଖୋଲି, ଅଳଙ୍କାର ସବୁ ବାହାର କରି, ଭୂମି ଉପରେ ମନ ଦୁଃଖରେ ଶୋଇରହିଛନ୍ତି ।

ରାଜା ପଚାରିଲେ, "କଥା କଣ ? ତୁମର କଣ ଶରୀର ଅସୁସ୍ଥ ? ରାଜ ଦରବାରର ବୈଦ୍ୟଙ୍କୁ ଡକାଇବି ?"

କୈକେୟୀ କୌଣସି ଉତ୍ତର ନ ଦେବାରୁ ଦଶରଥ ଖୁବ୍ ବ୍ୟଗ୍ର ହୋଇ ଉଠିଲେ । କଣ ହୋଇଛି କହିବାକୁ ରାଜା ତାଙ୍କୁ ଅନୁରୋଧ କଲେ ।

ଶେଷରେ କୈକେୟୀ କଥା କହିଲେ—"ମୋ ଶରୀର ଅସୁସ୍ଥ ନୁହେଁ; କେବଳ ପ୍ରତିଜ୍ଞା କରନ୍ତୁ ମୁଁ ଯାହା ମାଗିବି ଦେବେ ।"

ଦଶରଥ କହିଲେ, "ମୁଁ ରାମ ନାମରେ ପ୍ରତିଜ୍ଞା କରି କହୁଛି ତୁମେ ଯାହା ଚାହିଁବ ଦେବି ।"

"ଆପଣ ରଣଭୂମିରେ ଯେଉଁ ବର ଦୁଇଟି ମୋତେ ଦେବେ ବୋଲି ପ୍ରତିଜ୍ଞା କରିଥିଲେ ତାହା ବର୍ତ୍ତମାନ ଦିଅନ୍ତୁ, ନଚେତ୍ ମୁଁ ଜୀବନ ରଖିବି ନାହିଁ ।"

"ତୁମର ଯାହା ଇଚ୍ଛା ମାଗ । ଦଶରଥ ତାଙ୍କର କଥା କେବେ ଫେରେଇ ନଅନ୍ତି ନାହିଁ ।" ଅଳ୍ପ ହସି ଉତ୍ତର ଦେଲେ ଦଶରଥ ।

କୈକେୟୀ କହିଲେ, "ଭରତଙ୍କୁ ରାଜା କରନ୍ତୁ ଏବଂ ରାମଙ୍କୁ ସନ୍ନ୍ୟାସୀ ସ୍ୱରୂପରେ ବାସ କରିବା ପାଇଁ ଚଉଦବର୍ଷ ବନବାସରେ ପଠାନ୍ତୁ ।"

ଦଶରଥ ଯେପରି ପଥର ପାଲଟିଗଲେ । ସେ ନିଜର କାନକୁ ବିଶ୍ୱାସ କରିପାରିଲେ ନାହିଁ । ରାମଙ୍କୁ ପଠାଇ ଦେବି ! ମୋର ପ୍ରିୟ ପୁତ୍ର ଯାହାକୁ ମୋର ପ୍ରଜାମାନେ ଏତେ ସ୍ନେହ କରନ୍ତି ତାକୁ ଜଙ୍ଗଲକୁ ପଠେଇଦେବି ? ତୁମେ କ'ଣ କହୁଛ ନଚେ

ବୁଝିପାରୁଛ ତ ? ମୁଁ ବିନା କାରଣରେ ତାକୁ କେମିତ ଛଡ଼ିଦେବି ? ହେ ଦୁଷ୍ଟା ନାରୀ, ତୁମେ ଅନ୍ୟ ଯେକୌଣସି ବର ମାଗ ।''

କିନ୍ତୁ କୈକେୟୀ କିଛି ଶୁଣିବାକୁ ରାଜି ନୁହନ୍ତି । ରାମଙ୍କୁ ଯିବାକୁ ହବ । ତା ଛଡ଼ା



େନ୍ୟ କିଛି ତାଙ୍କ ଇଚ୍ଛା ପୂରଣ କରିପାରିବ ନାହିଁ । ଦଶରଥ ସାରା ରାତି ତାଙ୍କ ସହିତ ଯୁକ୍ତିକଲେ, ଅନୁରୋଧ କଲେ ଓ ଧମକେଇଲେ; କିନ୍ତୁ କିଛି ଫଳ ହେଲା ନାହିଁ । ସେହି ଭାଳ ରାତି ପାହି ସକାଳ ହେଲା ।



## ରାମଙ୍କ ବନବାସ

ପରଦିନ ପ୍ରତ୍ୟୁଷରୁ ରାଜଗୁରୁ ବଶିଷ୍ଠ ଉତ୍ସବର ଆୟୋଜନ କରିବାକୁ ଆରମ୍ଭ କଲେ । ନାଗରିକମାନେ ସେମାନଙ୍କ ପ୍ରିୟ ରାମଙ୍କର ଅଭିଷେକ ଦେଖିବା ପାଇଁ ଆନନ୍ଦ ପ୍ରମତ୍ତ ହୋଇ ବାହାରକୁ ଆସିବାରୁ ରାସ୍ତା ଜନାକୀର୍ଣ୍ଣ ହୋଇଉଠିଲା । ଶୁଭମୁହୂର୍ତ୍ତ ପାଖେଇ ଆସିଲା; କିନ୍ତୁ ରାଜା କାହାନ୍ତି ?

ବଶିଷ୍ଠ ଉଦ୍‌ବିଗ୍ନ ହୋଇ ମନ୍ତ୍ରୀ ସୁମନ୍ତ୍ରଙ୍କୁ କହିଲେ, "ଶୀଘ୍ର ତୁମେ ରାଜନଅରକୁ ଯାଇ ରାଜାଙ୍କୁ ଖବର ଦିଅ ଯେ ସବୁ ପ୍ରସ୍ତୁତ ଓ ଆମେ ତାଙ୍କର ପ୍ରତୀକ୍ଷା କରୁଛୁ ।"

ସୁମନ୍ତ୍ର ଶୀଘ୍ର କୈକେୟୀଙ୍କ କୋଠରୀକୁ ଯାଇ ଦେଖିଲେ ଯେ ଦଶରଥ ଖୁବ୍ ଅସୁସ୍ଥ ହୋଇ ବିଛଣାରେ ଶୋଇଛନ୍ତି । ସୁମନ୍ତ୍ର ଅତି ଉତ୍କଣ୍ଠାର ସହିତ କଣ ହୋଇଛି ବୋଲି ପଚାରିଲେ । ରାଜା ଏତେ ଶୋକାର୍ତ୍ତ ଥିଲେ ଯେ କିଛି ଉତ୍ତର ଦେଇ ପାରିଲେ ନାହିଁ ।

ତାଙ୍କ ପରିବର୍ତ୍ତେ କୈକେୟୀ ଉତ୍ତର ଦେଲେ, "ଆଜିର ଉତ୍ସବ ପାଇଁ ରାଜା ଏତେ ଉତ୍ତେଜିତ ହୋଇପଡ଼ିଥିଲେ ଯେ ସେ ଆଦୌ ଶୋଇ ପାରି ନାହାନ୍ତି । ଆପଣ ରାମଙ୍କୁ ଶୀଘ୍ର ଏଠାକୁ ପଠାଇ ଦିଅନ୍ତୁ ।"

"ମୁଁ ରାଜାଙ୍କର ଆଦେଶକୁ ଅପେକ୍ଷା କରିଛି," କହିଲେ ସୁମନ୍ତ୍ର । ରାଜା ଅତି ଦୁର୍ବଳ ସ୍ୱରରେ କହିଲେ, "ହଁ, ରାମକୁ ମୋ ନିକଟକୁ ନେଇ ଆସ ।"

ସୁମନ୍ତ୍ର ବ୍ୟସ୍ତ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇ ରାମଙ୍କ ନଅରକୁ ଗଲେ । ନଅର ସାମନାରେ ସୁନ୍ଦର ପୋଷାକ ପିନ୍ଧି ଖୁସିମନରେ ଅନେକ ଲୋକ ଜମା ହୋଇଥିଲେ । ଲକ୍ଷ୍ମଣ ଦ୍ୱାର ଦେଶରେ ଉପସ୍ଥିତ ଥିଲେ । ରାମ ସୀତାଙ୍କ ସହିତ ଅନ୍ତଃପୁରରେ ଉତ୍ସବ ଆରମ୍ଭ ହେବା ଅପେକ୍ଷାରେ ଥିବାବେଳେ ସୁମନ୍ତ୍ର ସେଠାରେ ଯାଇ ପହଞ୍ଚି କହିଲେ, "ହେ ରାଜପୁତ୍ର, ରାଜା ତୁମର ପ୍ରତୀକ୍ଷା କରୁଛନ୍ତି ।"

ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ରାମ ଲକ୍ଷ୍ମଣଙ୍କୁ ଡାକି ରାଜନଅରକୁ ଗଲେ । ଲୋକମାନେ ତାଙ୍କୁ ଆନୁଷ୍ଠାନିକ ପୋଷାକରେ ଦେଖି ଆନନ୍ଦରେ ଜୟଜୟକାର କରିବାକୁ ଲାଗିଲେ ।

ସେମାନେ ଭାବିଲେ ଯେ ରାମ ଉତ୍ସବକୁ ଯାଉଛନ୍ତି । ସେମାନେ ତାଙ୍କୁ ଆଶୀର୍ବାଦ କଲେ ଓ ସ୍ତ୍ରୀଲୋକମାନେ ନିଜନିଜର ବାରଣ୍ଡାରୁ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ ।

ଦୁଇ ରାଜପୁତ୍ର କୈକେୟୀଙ୍କ ଘରରେ ପ୍ରବେଶ କରି ପିତାଙ୍କ ନିକଟରେ ଉପସ୍ଥିତ ହେଲେ । ତାଙ୍କ ଚେହେରା ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଚେହେରାରେ ଏତେ ପରିବର୍ତ୍ତନ ଆଣିବା ପରି ରାତିକ ଭିତରେ କ'ଣ ହୋଇପାରିଥାଏ ! ସେ କ୍ଷୀଣ, ଅବସନ୍ନ ଓ ଦୁଃଖିତ ଜଣାପଡ଼ୁଥିଲେ । ରାମ ପ୍ରଥମେ ରାଜାଙ୍କୁ ଓ ତାପରେ କୈକେୟୀଙ୍କୁ ପ୍ରଣାମ କଲେ ।

"ରାମ !" ରୁଦ୍ଧ ଗଳାରେ କହିଲେ ଦଶରଥ ।

ରାମ ହଠାତ୍ ଅମଙ୍ଗଳର ସୂଚନା ଦେଖିବାକୁ ପାଇ କହିଲେ, "କୁହନ୍ତୁ ପିତା, ମୁଁ କ'ଣ କିଛି ଭୁଲ୍ କରିଛି ?"

କିନ୍ତୁ ଦଶରଥ କିଛି ଉତ୍ତର ଦେଇ ପାରିଲେ ନାହିଁ । ରାମ ତାପରେ କୈକେୟୀଙ୍କୁ ଅନୁନୟ ହୋଇ ପଚାରିଲେ, "ମୁଁ କଣ କିଛି ଭୁଲ କରିଛି ମା ? ପିତା କାହିଁକି କଥା କହୁନାହାନ୍ତି ? ସେ କ'ଣ ଖୁବ୍ ଅସୁସ୍ଥ ? କିମ୍ବା ଆପଣଙ୍କ ମୁହଁରୁ କଟୁକଥା ଶୁଣି ସେ ଦୁଃଖ ପାଇଛନ୍ତି ?"

"ନାଁ, ସେ ଅସୁସ୍ଥ ନୁହଁନ୍ତି କି ତୁମ ଉପରେ ରାଗି ନାହାନ୍ତି; କିନ୍ତୁ ତୁମେ ଅସନ୍ତୁଷ୍ଟ ହେବ ଭାବି ତାଙ୍କ ମନରେ ଯାହା ଅଛି କହିବାକୁ ସାହସ ପାଉନାହାନ୍ତି ।" ଉତ୍ତର ଦେଲେ କୈକେୟୀ ।

ରାମ ନିବେଦନ କରି କହିଲେ, "ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି, ପିତା କ'ଣ ଚାହାନ୍ତି ଆପଣ ମତେ କହନ୍ତୁ ।"

ରାଣୀ କହିଲେ "ସେ ମତେ ଥରେ ଦୁଇଟି ବର ଦେବାକୁ ପ୍ରତିଜ୍ଞା କରିଥିଲେ; କିନ୍ତୁ ଆଜି ଯେତେବେଳେ ମୁଁ ସେହି ବର ଦୁଇଟି ମାଗିଲି ସେ ଏପରି ଭାବରେ ବ୍ୟବହାର କଲେ ଯାହାକି ଜଣେ ରାଜାର ଯୋଗ୍ୟ ନୁହେଁ । ରାଜା ନିଜର ପ୍ରତିଜ୍ଞା ରକ୍ଷା କରିବା ଉଚିତ । ସେ ବର୍ତ୍ତମାନ ଦୁଃଖ ଓ ରାଗରେ ନିର୍ବାକ୍ ହୋଇଯାଇଛନ୍ତି; କିନ୍ତୁ ତୁମେ ଯଦି କଥା ଦିଅ ଯେ ସେ କରିଥିବା ପ୍ରତିଜ୍ଞା ତୁମେ ପାଳନ କରିବ ତେବେ ମୁଁ ତାହା ପ୍ରକାଶ କରିବ ।"

"ଯଦି ରାଜା ଚାହାଁନ୍ତି ତେବେ ଅଗ୍ନିରେ ପଶିବାକୁ ମଧ୍ୟ ମୁଁ ପ୍ରସ୍ତୁତ ଅଛି ।"—ଉତ୍ତର ଦେଲେ ରାମ । "ସେ ଖାଲି କ'ଣ ଚାହାନ୍ତି ଆପଣ କହନ୍ତୁ ଓ ମୁଁ ସଙ୍ଗେ ସଙ୍ଗେ ତାହା ପାଳନ କରିବ । ମୁଁ କେବେ ମୋର ପ୍ରତିଜ୍ଞା ପାଳନ କରିବାରୁ ପଛେଇଯାଇନି ।"

କୈକେୟୀ କହିଲେ, "ମୋର ଇଚ୍ଛା, ଭରତର ରାଜ୍ୟାଭିଷେକ ହେବ ଓ ତୁମେ ଚଉଦବର୍ଷ ବନବାସ କରି ସନ୍ନ୍ୟାସୀ ଜୀବନ କଟାଇବ । ସେଥିପାଇଁ ରାଜା ଦୁଃଖରେ ମ୍ରିୟମାଣ ହୋଇ କଥା କହୁନାହାନ୍ତି ।"



ରାମଙ୍କଠାରେ ଭାବପ୍ରବଣତାର କୌଣସି ଲକ୍ଷଣ ଦେଖାଗଲାନାହିଁ । ସେ ଖୁବ୍ ଧୀରସ୍ଥିର ଭାବରେ କଥା କହୁଥାନ୍ତି । "ତାହାହିଁ ହେବ । ଭରତର ଅଭିଷେକ ହେଉ ଓ ମୁଁ ଆଜି ବଣକୁ ଚାଲିଯିବି ।"

କୈକେୟୀ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, "ହଁ, ଆମର ଆଉ ବିଳମ୍ବ କରିବା ଉଚିତ ନୁହେଁ । ତୁମେ ଅଯୋଧ୍ୟା ନ ଛାଡ଼ିବା ପର୍ଯ୍ୟନ୍ତ ତୁମର ପିତା ସ୍ନାନ ବା ଭୋଜନ କରିବେ ନାହିଁ ।"

"ତୁମକୁ ଲଜ୍ଜା ଲାଗିବା ଉଚିତ ।"—କହି ଦଶରଥ ମୂର୍ଚ୍ଛା ହୋଇଗଲେ ।

ପିତାଙ୍କର ଯତ୍ନ ନେବାଲାଗି ଉପଯୁକ୍ତ ବ୍ୟବସ୍ଥା କରି ରାମ କୈକେୟୀଙ୍କୁ କହିଲେ, "ମୁଁ ଶୀଘ୍ର ମୋର ମାତା ଓ ପତ୍ନୀଙ୍କଠାରୁ ବିଦାୟ ନେଇ ଚାଲିଯିବି ।" ସେ ରାଗରେ ଥରୁଥିବା ଲକ୍ଷ୍ମଣଙ୍କ ସହ ରାଜନଅର ଛାଡ଼ି ଚାଲିଗଲେ ।

ଜନସମାବେଶକୁ ପରିହାର କରି ସେ କୌଶଲ୍ୟାଙ୍କ ନଅରକୁ ଗଲେ । ଦୂରରୁ ସେମାନେ ଉତ୍ସବର ପ୍ରସ୍ତୁତି ଓ ଲୋକମାନେ ଆନନ୍ଦ କରୁଥିବା ଦେଖିଲେ । ଯେତେବେଳେ ରାମଙ୍କୁ ଦେଖି କୌଣସି ଲୋକ କିଛି ହେଲେ ଅନୁମାନ କରିପାରିଲେ ନାହିଁ ।

ଯେତେବେଳେ ରାଜପୁତ୍ରମାନେ କୌଶଲ୍ୟାଙ୍କ ନିକଟରେ ପହଞ୍ଚିଲେ ସେତେବେଳେ ସେ ପ୍ରାର୍ଥନା କରୁଥିଲେ । ଆନନ୍ଦର ସହିତ ସେ ସେମାନଙ୍କୁ ଆଶୀର୍ବାଦ କରିବାକୁ ଉଠିଲାବେଳେ ଲକ୍ଷ୍ମଣ ତାଙ୍କୁ ସବୁ ଘଟଣା କହିବାରୁ ସେ ମୂର୍ଚ୍ଛିତ ହୋଇ ପଡ଼ିଗଲେ ।



ଏହା ଦେଖି ରାଗରେ ଅଗ୍ନିବାଣ ହୋଇଯାଇଥିବା ଲକ୍ଷ୍ମଣ ରାମଙ୍କୁ କହିଲେ, "ଏପର୍ଯ୍ୟନ୍ତ କେହି କିଛି ଜାଣି ନାହାନ୍ତି । ଆପଣ ରାଜମୁକୁଟ କବଳିତ କରନ୍ତୁ । ଯେ ଆପଣଙ୍କର ବିରୋଧ କରିବ ମୁଁ ତାହାର ମୁକାବିଲା କରିବ ।"

କିନ୍ତୁ ରାମ ସେକଥା ନଶୁଣି କହିଲେ, "ନା ଲକ୍ଷ୍ମଣ, ପିତାଙ୍କର ପ୍ରତିଜ୍ଞା ପାଳନ କରିବା ଆମର କର୍ତ୍ତବ୍ୟ ।"

କୌଶଲ୍ୟା ସେତେବେଳକୁ ତାଙ୍କର ଚେତନା ଫେରିପାଇଥାଆନ୍ତି । "ହେ ପୁତ୍ର, ତୁମେ ଠିକ୍ କହୁଛ; କିନ୍ତୁ ମୁଁ ତୁମ ସହିତ ଯିବି । ଏଠାରେ ଦିନରାତି କୈକେୟୀଙ୍କର ଅପମାନ ସହି କିପରି ରହିବି ?"—କହିଲେ କୌଶଲ୍ୟା ।

ରାମ କହିଲେ,—"ରାଜାଙ୍କ ପାଇଁ ତୁମର ଏଠାରେ ସବୁ କଷ୍ଟ ସହ୍ୟ କରି ରହିବା ଉଚିତ । ସେ ତୁମର ସାହାଯ୍ୟ ଚାହିଁବେ । ଚଉଦବର୍ଷ ଖୁବ୍ ଶୀଘ୍ର ବିତିଯିବ ଓ ମୁଁ ଫେରି ଆସିବି ।"

କୌଶଲ୍ୟା ଖୁବ୍ ଦୁଃଖର ସହିତ ରାଜି ହେଲେ ଓ ରାମଙ୍କୁ ଆଶୀର୍ବାଦ କରି କହିଲେ, "ହେ ବତ୍ସ, ତୁମେ ଯାଅ । ଭଗବାନ ତୁମର ସହାୟ ହୁଅନ୍ତୁ । ତୁମର ପ୍ରତ୍ୟାବର୍ତ୍ତନକୁ ମୁଁ ଅପେକ୍ଷା କରି ବଞ୍ଚି ରହିବି ।"

ସେଠାରୁ ରାଜପୁତ୍ରମାନେ ସୀତାଙ୍କ ଅନ୍ତଃପୁରକୁ ଗଲେ । ସେ ରାମଙ୍କୁ ତାଙ୍କର ରାଜକୀୟ ପୋଷାକରେ ଦେଖିବାକୁ ଅପେକ୍ଷା କରିଥିଲେ; କିନ୍ତୁ ଯେତେବେଳେ ଦେଖିଲେ ଯେ ରାମ ତାଙ୍କର ରାଜକୀୟ ପରିଧାନ ଚିହ୍ନ ଧାରଣ କରିନାହାନ୍ତି ଓ ଖୁବ୍ ମ୍ଳାନ ଏବଂ ଗମ୍ଭୀର ଦେଖାଯାଉଛନ୍ତି, ସେ ଖୁବ ବ୍ୟସ୍ତ ହୋଇ ପଚାରିଲେ, "ହେ ପ୍ରଭୁ, ଆପଣଙ୍କର କ'ଣ ହୋଇଚି ? ଆପଣ ଏତେ ମ୍ଳାନ ଓ ଦୁଃଖିତ କାହିଁକି ଦେଖାଯାଉଛନ୍ତି ?"

ରାମ କହିଲେ, "ମୋର ପିତା ରାଣୀ କୈକେୟୀଙ୍କୁ କଥା ଦେଇଛନ୍ତି ଯେ ଭରତ ରାଜା ହେବ ଓ ମୁଁ ଚଉଦବର୍ଷ ବନବାସରେ ଯିବି । ସୀତା, ମୁଁ ତୁମଠାରୁ ବିଦାୟ ନେବାକୁ ଆସିଛି । ମୋର ଅନୁପସ୍ଥିତିରେ ତୁମେ ଭରତଙ୍କୁ ଅସନ୍ତୁଷ୍ଟ କରିବା ପରି କୌଣସି କାର୍ଯ୍ୟ କରିବ ନାହିଁ । ମନେରଖିବ ଯେ ସେ ହେଉଛନ୍ତି ରାଜା ।"

ସୀତା ଦୁଃଖ ଓ ରାଗରେ କାନ୍ଦି ଉଠି କହିଲେ, "ନାଁ । ନାଁ, ମୁଁ ଏହା ସହ୍ୟ କରିପାରିବି ନାହିଁ । ଆପଣଙ୍କୁ ମୁଁ ଏକୁଟିଆ ଯିବାକୁ ଦେବିନି । ଆପଣଙ୍କ ସଙ୍ଗେ ମୁଁ ମଧ୍ୟ ଯିବି ।"

"ହେ ମୋର ପ୍ରିୟପତ୍ନୀ, ଜଙ୍ଗଲରେ ଜୀବନ ବିତାଇବା କି କଷ୍ଟକର, ତୁମର ଧାରଣା ନାହିଁ । ଦିନ ପରେ ଦିନ ତୁମକୁ ବିନା ଖାଦ୍ୟରେ ଓ ଅନିଦ୍ରାରେ ରହିବାକୁ ପଡ଼ିପାରେ ।

ତୁମର କୋମଳ ପାଦରେ କଣ୍ଟା ପଶି ରକ୍ତ ବହିବ ଏବଂ କେବଳ ଅନାବୃତ ଭୂମିଛଡ଼ା ଆଉ କିଛି ଶୋଇବାକୁ ମିଳିବ ନାହିଁ । ଏପରି ଭାବରେ ଜୀବନ ବିତାଇବାକୁ ମୁଁ କିପରି ତୁମକୁ ସଙ୍ଗରେ ନେବି ?" ମ୍ଳାନ ହସି କହିଲେ ରାମ ।

କିନ୍ତୁ ସୀତା ତାଙ୍କର ବାରଣ ପ୍ରତି କାନ ଦେଲେ ନାହିଁ ।

"ଆପଣ ମୋ ନିକଟରେ ଥିଲେ କଣ୍ଟା ଫୁଲ ପରି ଲାଗିବ । ଆପଣ ମୋ ଆଖିରୁ କ୍ଷଣକ ପାଇଁ ମଧ୍ୟ ଦୂରରେ ରହିବା ମୁଁ ସହ୍ୟ କରି ପାରିବି ନାହିଁ । ଦୀର୍ଘ ଚଉଦବର୍ଷ ଆପଣଙ୍କ ବିନା ମୁଁ କିପରି ବଞ୍ଚିରହିବି ?" ସେ କାନ୍ଦି କାନ୍ଦି କହିଲେ, "ହେ ପ୍ରଭୁ, ମୋତେ ଆପଣଙ୍କ ସଙ୍ଗେ ଯିବାକୁ ଦିଅନ୍ତୁ ।"

ଅବଶେଷରେ ରାମ ରାଜି ହେଲେ ।

ଲକ୍ଷ୍ମଣ ମଧ୍ୟ ଜିଦ କରି କହିଲେ, "ମୁଁ ମଧ୍ୟ ଆପଣଙ୍କ ସେବା କରିବା ପାଇଁ ଓ ଆପଣଙ୍କୁ ଜଗି ରହିବା ପାଇଁ ଆପଣଙ୍କ ସହିତ ଯିବି । ଆପଣ ମତେ ବାଧା ଦିଅନ୍ତୁ ନାହିଁ ।"

ରାମ ତାଙ୍କର ମନ ବଦଳେଇବାକୁ ଚେଷ୍ଟା କଲେ; କିନ୍ତୁ ସବୁ ବୃଥା ହେଲା । ତେଣୁ ତିନିଜଣଯାକ ଜଙ୍ଗଲକୁ ଯିବା ପୂର୍ବରୁ ରାଜାଙ୍କଠାରୁ ବିଦାୟ ନେବାକୁ ଗଲେ ।

ସେମାନେ ଦଶରଥଙ୍କୁ ତାଙ୍କ ରାଣୀ ଓ ମନ୍ତ୍ରୀମାନଙ୍କ ସହ ଦେଖିଲେ । ଯାହା ସବୁ ଘଟିଗଲା ସେଥିପାଇଁ ମନ୍ତ୍ରୀମାନେ ଖୁବ୍ ଆଘାତ ପାଇଥିଲେ ଓ ରୁଷ୍ଟ ହୋଇଥିଲେ । ସେମାନେ କୈକେୟୀଙ୍କୁ କହିଲେ, "ହେ ରାଣୀ, ଆପଣ ଯାହା କରୁଛନ୍ତି ତାହା ଠିକ୍ ନୁହେଁ । ରାମ କୌଣସି ଭୁଲ କରିନାହାନ୍ତି । ରାଜା ତାଙ୍କୁ କିପରି ଦଣ୍ଡ ଦେବେ ? କିନ୍ତୁ କୈକେୟୀ ସେମାନଙ୍କ କଥା ଆଦୌ ଶୁଣିଲେ ନାହିଁ । ସେମାନେ ତାଙ୍କ ସହିତ ତର୍କ କଲେ, "ରଘୁବଂଶର ନିୟମ ଅନୁଯାୟୀ, ଯଦି ଅନୁପଯୁକ୍ତ ନହୋଇଥାଆନ୍ତି ତେବେ କେବଳ ଜ୍ୟେଷ୍ଠପୁତ୍ର ହିଁ ପିତାଙ୍କର ଉତ୍ତରାଧିକାରୀ ହୋଇପାରିବ ।"

କିନ୍ତୁ ରାଣୀ କୈକେୟୀ କୌଣସି ଯୁକ୍ତି ପ୍ରତି କର୍ଣ୍ଣପାତ କଲେ ନାହିଁ । ନିରାଶ ହୋଇ ଦଶରଥ ରାମଙ୍କୁ ସମ୍ବୋଧନ କରି କହିଲେ, "ହେ ପୁତ୍ର, ମୁଁ ପ୍ରତିଜ୍ଞାବଦ୍ଧ ହୋଇଛି, ତୁମେ ନୁହଁ । ମୋତେ ବନ୍ଦୀ କରି ତୁମେ ରାଜମୁକୁଟ ହସ୍ତଗତ କର । ତୁମେ ହିଁ ପ୍ରକୃତ ଉତ୍ତରାଧିକାରୀ ।"

ରାମ ଦୁଃଖର ସହିତ ଉତ୍ତର ଦେଲେ, "ଆପଣ ଅତ୍ୟଧିକ ମିଥ୍ୟାମାଣ ହୋଇ ମୋତେ କଣ କରିବାକୁ କହୁଛନ୍ତି ଜାଣିପାରୁ ନାହାନ୍ତି । ଆମକୁ ଆଶୀର୍ବାଦ କରି ବିଦାୟ ନେବାକୁ ଅନୁମତି ଦିଅନ୍ତୁ ।"

କିନ୍ତୁ ଦଶରଥ କରୁଣ ସ୍ୱରରେ କହିଲେ, "ମୋର ପ୍ରିୟ ସନ୍ତାନଗଣ, ଆଉ ଗୋଟିଏ ଦିନ ହେଲେ ରହିଯାଅ ।"

"ନାଁ ପିତା, ବିଦାୟର ଦୁଃଖକୁ ଆଉ ବଢ଼ାଇ ଲାଭ ନାହିଁ । ବର୍ତ୍ତମାନ ବିଦାୟ ନେବାକୁ ଆମକୁ ଅନୁମତି ଦିଅନ୍ତୁ ।" ଉତ୍ତର ଦେଲେ ରାମ ।

କୈକେୟୀ ସଙ୍ଗେ ସଙ୍ଗେ ସନ୍ନ୍ୟାସୀମାନେ ପିନ୍ଧୁଥିବା ଗଛର ବକଳରୁ ତିଆରି ପୋଷାକ ଆଣାଇ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଦେଲେ ।

କିନ୍ତୁ ବଶିଷ୍ଠ ପ୍ରତିବାଦ କରି କହିଲେ, "ସୀତା କାହିଁକି ସନ୍ନ୍ୟାସିନୀ ବେଶ ଧାରଣ କରିବେ ? ସେ ରାଜକୀୟ ପୋଷାକ ଓ ଅଳଙ୍କାର ପିନ୍ଧି ରାମଙ୍କ ସ୍ଥାନରେ ରାଜ୍ୟ ଶାସନ କରିବେ ।"

ସେଠାରେ ଉପସ୍ଥିତ ସମସ୍ତେ କାନ୍ଦି ପକାଇଲେ । ବଶିଷ୍ଠ କହିଲେ, "ଯଦି ସୀତା ଯାଆନ୍ତି ତେବେ ଅଯୋଧ୍ୟାର ନାଗରିକଗଣ ତାଙ୍କର ଅନୁଗମନ କରିବେ । ଭରତ ଗୋଟିଏ ମରୁଭୂମି ଉପରେ ଶାସନ କରିବେ । ରାମ ଯେଉଁଠାରେ ରହିବେ ତାହା ତାଙ୍କର ରାଜ୍ୟ ହେବ ।"

ଦଶରଥ କୈକେୟୀଙ୍କୁ ତାଙ୍କର ରୋଷ ଦମନ କରି ପାରିଲେ ନାହିଁ । ସେ କୈକେୟୀଙ୍କୁ କହିଲେ, "ତୁମେ ସୀମା ଲଙ୍ଘନ କରିଯାଉଛ । ମୋର ପ୍ରତିଜ୍ଞା ଭିତରେ ସୀତା ଅନ୍ତର୍ଭୁକ୍ତ ନୁହନ୍ତି । ସୀତା ଯେଉଁ ଚଉଦବର୍ଷ ବନବାସ କରିବେ ତା ପାଇଁ ରାଣୀର ଯୋଗ୍ୟ ବସ୍ତ୍ର ଓ ଅଳଙ୍କାର ତାଙ୍କୁ ଦିଆଯାଉ ।"

ତାହା କରାଗଲା । ସମସ୍ତଙ୍କଠାରୁ ଶେଷ ବିଦାୟ ନେଇ ତିନିଜଣଯାକ ଯିବାପାଇଁ ପ୍ରସ୍ତୁତ ହେଲେ । ସେମାନେ ଯେଉଁ ରଥରେ ଯିବେ ତାହା ଅପେକ୍ଷା କରୁଥିଲା । ମନ୍ତ୍ରୀ ସୁମନ୍ତ୍ରଙ୍କ ସହିତ ସେମାନେ ଅଯୋଧ୍ୟା ଛାଡ଼ିଲେ ।

ସେତେବେଳକୁ ଏ ଖବର ଅଯୋଧ୍ୟାର ନାଗରିକମାନଙ୍କ ନିକଟରେ ପହଞ୍ଚି ସାରିଥିଲା । ସେମାନେ ରାମ ଓ ସୀତାଙ୍କୁ ଛାଡ଼ିବାକୁ ଚାହୁଁନଥିଲେ ତେଣୁ କାନ୍ଦି କାନ୍ଦି ରଥ ପଛେ ପଛେ ଯିବାକୁ ଲାଗିଲେ । ପୁରୁଷ, ସ୍ତ୍ରୀ, ବୃଦ୍ଧ, ଯୁବକ ସମସ୍ତେ ଲୋତକପୂର୍ଣ୍ଣ ନୟନରେ ରଥକୁ ଅନୁସରଣ କରିବାକୁ ଲାଗିଲେ ।

"ଆପଣ ରହନ୍ତୁ, ନଚେତ୍ ଆମକୁ ମଧ୍ୟ ସାଙ୍ଗରେ ନେଇ ଯାଆନ୍ତୁ ।"—ସେମାନେ ଚିତ୍କାର କରିବାକୁ ଲାଗିଲେ ।

ରାମ ରଥର ସାରଥୀକୁ ବୁଝି କହିଲେ, "ଏତେ ଜୋର୍‌ରେ ରଥ ଚଳାଅ ଯେ ସେମାନେ ଆମ ନିକଟରେ ପହଞ୍ଚି ନପାରି ବାଧ୍ୟ ହୋଇ ଘରକୁ ଫେରିଯିବେ ।"

କେତେକ ଫେରିଗଲେ, ଆଉ କେତେକ ସାୟଂକାଳ ପର୍ଯ୍ୟନ୍ତ ରଥକୁ ଅନୁସରଣ କରିବାକୁ ଲାଗିଲେ । କଥିତ ଅଛି, ଆଉ କେତେକ ଚଉଦବର୍ଷ ପରେ ଅଯୋଧ୍ୟାକୁ ଫେରିବା ପର୍ଯ୍ୟନ୍ତ ରାସ୍ତା କଡ଼ରେ ରାମଙ୍କୁ ଅପେକ୍ଷା କରି ରହିଥିଲେ ।

ସନ୍ଧ୍ୟା ବେଳକୁ ନିର୍ବାସିତ ରାମ, ଲକ୍ଷ୍ମଣ ଓ ସୀତା ଗଙ୍ଗାକୂଳରେ ଥିବା ଶୃଙ୍ଗବେର-ପୁରରେ ପହଞ୍ଚିଲେ । ଆଦିବାସୀ ରାଜା ଗୁହ, ଯେ କି ରାମଙ୍କ ଭକ୍ତ, ସେହିଠାରେ ବାସ କରୁଥିଲେ । ସେ ସେମାନଙ୍କୁ ସ୍ୱାଗତ କରି ତାଙ୍କ ନିକଟରେ ରାତି ଯାପନ କରିବାକୁ ଅନୁରୋଧ କଲେ । ପରଦିନ ପ୍ରତ୍ୟୁଷରୁ ରାମ ସୁମନ୍ତ୍ରଙ୍କୁ ଫେରାଇଦେଲେ । ସୁମନ୍ତ୍ର ଫେରିଯିବାକୁ କୁଣ୍ଠା ବୋଧ କରିବାରୁ ରାମ ତାଙ୍କୁ କହିଲେ, "ଆପଣ ଫେରିଯାଇ ମୋର ପିତାଙ୍କୁ ଆଶ୍ୱାସନା ଦିଅନ୍ତୁ । ନାଗରିକମାନଙ୍କୁ କହିବେ ଯେ ଆମ୍ଭେମାନେ ପ୍ରକୃତରେ ଜଙ୍ଗଲକୁ ଚାଲିଯାଇଛୁ, ନଚେତ୍ ସେମାନେ ଆମପାଇଁ ଅପେକ୍ଷା କରି ରହିବେ ।"

ଗୁହର ନୌକାରେ ରାଜପୁତ୍ରଦ୍ୱୟ ଓ ସୀତା ନିରାପଦରେ ନଦୀ ପାର ହେବା ପର୍ଯ୍ୟନ୍ତ ସୁମନ୍ତ୍ର ଅପେକ୍ଷା କଲେ । ତାପରେ ସେ ବିରସ ମନରେ ଅଯୋଧ୍ୟାକୁ ଫେରିଗଲେ । ଅଯୋଧ୍ୟାରୁ ସବୁ ସୁଖ ଆନନ୍ଦ କେଉଁଆଡ଼େ ଉଭେଇ ଗଲା ପରି ତାଙ୍କର ମନେହେଲା ।

ସୁମନ୍ତ୍ର ସିଧା ରାଜାଙ୍କ ନିକଟକୁ ଗଲେ । ଦଶରଥ ଶୋଚନୀୟ ଅବସ୍ଥାରେ, ଭଗ୍ନ ହୃଦୟରେ କୌଶଲ୍ୟାଙ୍କ ନିଅଳରେ ଶୋଇ ରହିଥିଲେ । ସେ ସୁମନ୍ତ୍ରଙ୍କୁ ଦେଖିବାମାତ୍ରେ ମୁଣ୍ଡ ଉଠାଇ ବ୍ୟଗ୍ରତାର ସହିତ ପଚାରିଲେ, "ସେମାନେ ବର୍ତ୍ତମାନ କେଉଁଠି ? ସେଉଁଠାରେ ଶୋଇଲେ ? କ'ଣ ଖାଇଲେ ?"

ସୁମନ୍ତ୍ର ତାଙ୍କୁ ସବୁ ବିଷୟ କହି ତାଙ୍କର ସାଧ୍ୟମତେ ଆଶ୍ୱାସନା ଦେଲେ; କିନ୍ତୁ କିଛି ହେଲେ ଦଶରଥଙ୍କ ମନୋବ୍ୟଥାକୁ ଦୂର କରିପାରିଲେ ନାହିଁ । ତାଙ୍କର ହୃଦୟ ଏତେ ଦୁଃଖପୂର୍ଣ୍ଣ ହୋଇ ଯାଇଥିଲା ଯେ ତାଙ୍କର ଆଉ ବଞ୍ଚି ରହିବାକୁ ଇଚ୍ଛା ନଥିଲା । ରାମଙ୍କ ଅଯୋଧ୍ୟା ଛାଡ଼ିବାର ଛଅ ଦିନ ପରେ ଦଶରଥଙ୍କର ମୃତ୍ୟୁ ହେଲା ।

ପରଦିନ ରାଜଦରବାରର ଉପଦେଷ୍ଟା ବଶିଷ୍ଠ ମନ୍ତ୍ରୀମାନଙ୍କୁ ଡାକି ତତ୍‌କ୍ଷଣାତ୍ ଭରତଙ୍କୁ ଡକାଇବା ପାଇଁ ଉପଦେଶ ଦେଲେ । ସେ କହିଲେ ଯେ ଶୂନ୍ୟ ସିଂହାସନ ଯୋଗୁଁ ଅରାଜକତା ସୃଷ୍ଟି ହୋଇପାରେ । ତେଣୁ ଭରତଙ୍କୁ ସଙ୍ଗେ ସଙ୍ଗେ ଫେରାଇ ଆଣିବା ପାଇଁ ଦୂତ ପଠାହେଲା । ତାଙ୍କୁ ରାମଙ୍କ ବନବାସ ବା ଦଶରଥଙ୍କ ମୃତ୍ୟୁ ବିଷୟରେ ନ କହିବା-ପାଇଁ ଦୂତକୁ ଆଦେଶ ଦିଆଯାଇଥିଲା ।

# ଭରତ ଅଯୋଧ୍ୟାକୁ ଫେରିଲେ

ଭରତଙ୍କ ରଥ ଅଯୋଧ୍ୟା ନିକଟରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେ ନିଜ ମନ ମଧ୍ୟରେ ଅମଙ୍ଗଳର ସୂଚନା ପାଇଲେ । "ଅଯୋଧ୍ୟା ଆଜି ଭିନ୍ନ ଦିଶୁଛି" ସେ କହିଲେ । "ଏଠାରେ ପୂର୍ବର ପ୍ରଫୁଲ୍ଲତା ଓ ଆନନ୍ଦ କାହିଁ ? ସୁଖୀ ପ୍ରଜାଗଣ କାହାନ୍ତି ? ଦୂରରୁ ଶୁଣାଯାଉଥିବା ସଙ୍ଗୀତର ଝଙ୍କାର କାହିଁ ? ଏପରିକି ଗଛପତ୍ରଗୁଡ଼ିକ ମଧ୍ୟ ବିଷଣ୍ଣ ମନେହେଉଛନ୍ତି !"

ରାଜନଅରରେ ପହଞ୍ଚି ଭରତ ପ୍ରଥମେ ତାଙ୍କର ପିତାଙ୍କ ପ୍ରକୋଷ୍ଠକୁ ଯାଇ ସେଠାରେ ଦଶରଥଙ୍କୁ ନ ଦେଖି ସେ କୈକେୟୀଙ୍କ ନଅରକୁ ଗଲେ । ତାଙ୍କ ମାତା ଆନନ୍ଦରେ ତାଙ୍କୁ ଆସି କୁଣ୍ଢାଇ ପକାଇଲେ ।

ଭରତ ଅଧୈର୍ଯ୍ୟ ହୋଇ ପଚାରିଲେ, "ପିତା କାହାନ୍ତି ? ମୁଁ ପ୍ରଥମେ ତାଙ୍କୁ ମୋର ପ୍ରଣାମ ଜଣାଇବି ।" କୈକେୟୀ ଉତ୍ତର ଦେଲେ, ' ସବୁ ଜୀବିତ ପ୍ରାଣୀ ଯେଉଁଠାକୁ ଦିନେ ନା ଦିନେ ଯାଆନ୍ତି ତୁମର ପିତା ସେଠାକୁ ଚାଲିଯାଇଛନ୍ତି ।"

ଭରତ ଦୁଃଖ ଓ ଭୟରେ କ୍ରନ୍ଦନ କରିବାକୁ ଲାଗିଲେ । କୈକେୟୀ ତାଙ୍କୁ ଭର୍ତ୍ସନା କରି କହିଲେ "ଜଣେ ରାଜପୁତ୍ର ଏପରି ସ୍ୱରରେ କ୍ରନ୍ଦନ କରିବା ଶୋଭା ପାଏ ନାହିଁ ।"

କିନ୍ତୁ ଭରତଙ୍କୁ ସାନ୍ତ୍ୱନା ଦେବା ସମ୍ଭବ ହେଲା ନାହିଁ । "ମୁଁ ଭାବିଥିଲି ରାଜା ରାମଙ୍କର ଅଭିଷେକ ପାଇଁ ପ୍ରସ୍ତୁତ କରୁଛନ୍ତି । ସେଥିପାଇଁ ମୁଁ ଭାରି ଖୁସିରେ ଶୀଘ୍ର ଚାଲିଆସିଲି କ'ଣ ଏଇଆ ଦେଖିବାପାଇଁ ? କ'ଣ ହେଲା ? ସେ କିପରି ମୃତ୍ୟୁବରଣ କଲେ ? ସେ କଣ ମୋ ପାଇଁ କୌଣସି ଆଦେଶ ଦେଇ ଯାଇ ନାହାନ୍ତି ?"

"ନାଁ"—ରୁକ୍ଷ ସ୍ୱରରେ ଉତ୍ତର ଦେଲେ କୈକେୟୀ । "ସେମାନଙ୍କୁ ବିତାଡ଼ିତ କରିଥିବାରୁ ତାଙ୍କର ଶେଷ କଥା ଥିଲା, ହେ ରାମ ! ହେ ଲକ୍ଷ୍ମଣ ! ହେ ସୀତା !" ତା ପରେ ସେ କିପରି ରାଜାଙ୍କୁ ଦୁଇଟି ବର ମାଗିଥିଲେ, ରାମ ସୀତା ଓ ଲକ୍ଷ୍ମଣଙ୍କ ସହ ବନବାସ ପାଇଁ

ଗଲେ ଓ ରାଜା ଉପରି ଦୁଃଖରେ ମ୍ରିୟମାଣ ହୋଇ ମୃତ୍ୟୁବରଣ କଲେ ସବୁ ବିଷୟ ଭରତଙ୍କୁ କହିଲେ । ଶେଷରେ ସେ କହିଲେ, 'ହେ ପୁତ୍ର, ମୁଁ ଏସବୁ ତୁମର ମଙ୍ଗଳ ପାଇଁ କରିଛି । ବର୍ତ୍ତମାନ ଏ ରାଜ୍ୟ ତୁମର । ତୁମେ ହିଁ ରାଜମୁକୁଟର ଅଧିକାରୀ ।"

ଭରତ ମନସ୍ତାପରେ କହିଲେ, "ହେ କୁଚକ୍ରୀ ନାରୀ, ତୁମେ କଣ କରିଛ ତୁମେ କ'ଣ ବୁଝିପାରୁନ ? ମୋର ପିତା ଓ ଜ୍ୟେଷ୍ଠଭ୍ରାତା, ଯେ କି ମୋର ପିତା ସମାନ ଥିଲେ—ଏମାନଙ୍କ ବିନା ଏ ରାଜମୁକୁଟର ମୋ ପାଖରେ ମୂଲ୍ୟ କଣ ? ଇକ୍ଷ୍ୱାକୁ ରୀତି ଅନୁଯାୟୀ ଜ୍ୟେଷ୍ଠପୁତ୍ର ହିଁ ପିତାଙ୍କର ଉତ୍ତରାଧିକାରୀ ଏହା କ'ଣ ତୁମେ ଜାଣ ନାହିଁ ?"

ଦୁଃଖରେ ଅଧୀର ହୋଇ ସେ କୈକେୟୀଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ—"ମୁଁ ସର୍ବଦା ମୋର ଧର୍ମନିଷ୍ଠା ଯୋଗୁଁ ଗର୍ବିତ ଥିଲି । ତୁମେ ମୋର ସେହି ଗର୍ବକୁ ଧୂଳିସାତ୍ କରିଦେଲ । ତୁମେ ମୋ ପ୍ରତି ଏପରି ବ୍ୟବହାର କପରି କରି ପାରିଲ ? କିନ୍ତୁ ମନେରଖ, ତୁମେ ଯାହା ଚାହୁଁଛ ମୁଁ କେବେହେଲେ ତାହା କରିବି ନାହିଁ । ମୁଁ ରାମଙ୍କୁ ଫେରାଇ ଆଣି ତାଙ୍କର ସେବା କରିବି ।"

ଭରତ ତାଙ୍କ ମାତାଙ୍କୁ ଛାଡ଼ି କୌଶଲ୍ୟାଙ୍କ ଅନ୍ୱେଷଣରେ ଚଲେ । ସେ ତାଙ୍କର ପ୍ରତ୍ୟାବର୍ତ୍ତନର ଖବର ପାଇ ସୁମିତ୍ରାଙ୍କ ସହ ତାଙ୍କୁ ଭେଟିବାପାଇଁ ଯାଉଥିଲେ । ଭରତ ସେମାନଙ୍କୁ ଭେଟି ତାଙ୍କର ପାଦତଳେ ପଡ଼ିଗଲେ । କୌଶଲ୍ୟା ତାଙ୍କୁ ଉଠାଇ ଆଲିଙ୍ଗନ କରି କହିଲେ, 'ହେ ପୁତ୍ର, ତୁମେ ଯେଉଁ ରାଜ୍ୟ ଚାହୁଁଥିଲ ତାହା ବର୍ତ୍ତମାନ ତୁମର । କୈକେୟୀ ଅତି ନିଷ୍ଠୁର ଭାବରେ ତାହା ତୁମପାଇଁ ନିରାପଦ କରି ରଖିଛନ୍ତି । ତୁମେ ତାହା ଉପଭୋଗ କର; କିନ୍ତୁ ମତେ ମୋର ପୁତ୍ର ରାମଙ୍କ ନିକଟକୁ ପଠାଇଦିଅ ।"

ବ୍ୟଥିତ ହୋଇ ଭରତ୍ କହିଲେ, "ହେ ମାତା, ଆପଣ ମୋତେ ବିଶ୍ୱାସ କରନ୍ତୁ । ଏ କୁଚକ୍ରାନ୍ତ ବିଷୟରେ ମତେ କିଛି ଜଣା ନଥିଲା । ଆପଣ ଜାଣନ୍ତି ମୁଁ ରାମଙ୍କୁ କେତେ ଭଲ ପାଏ । ତାଙ୍କୁ ଦୁଃଖ ଦେଲା ପରି କୌଣସି କାର୍ଯ୍ୟ ମୁଁ କପରି କରିପାରିବି !"

କୌଶଲ୍ୟା ଭରତଙ୍କ କଥା ବିଶ୍ୱାସ କଲେ । ତାଙ୍କୁ ରାମଙ୍କ ନିକଟକୁ ପଠାଇ ଦେବାପାଇଁ ପୁଣି ଭରତଙ୍କୁ ଅନୁରୋଧ କଲେ ।

"ଆପଣ ଶାନ୍ତ ହୁଅନ୍ତୁ ।" କହିଲେ ଭରତ—"ମୁଁ ନିଜେ ଯାଇ ରାମଙ୍କୁ ଆପଣଙ୍କ ନିକଟକୁ ଫେରାଇ ଆଣିବି ।"

ଭରତ ଓ ଶତ୍ରୁଘ୍ନ ରାମଙ୍କୁ ଖୋଜିବା ପାଇଁ ଯିବା ବିଷୟରେ କଥାବାର୍ତ୍ତା ହେଉଛନ୍ତି, ଏପରି ସମୟରେ କୈକେୟୀ ଦେଇଥିବା ସୁନ୍ଦର ବସ୍ତ୍ର ଓ ଅଳଙ୍କାର ପିନ୍ଧି ମନ୍ଥରା ଦ୍ୱାର-ଦେଶରେ ଉପସ୍ଥିତ ହେଲା । ଦ୍ୱାରପାଳ ଆଗରୁ ଶତ୍ରୁଘ୍ନଙ୍କୁ କହିଥିଲା ଯେ ଅଯୋଧ୍ୟା ଉପରେ ଯେଉଁ ଅମଙ୍ଗଳର ଝଡ଼ ବହିଗଲା ସେଥିପାଇଁ ମନ୍ଥରା ହିଁ ଦାୟୀ । ଶତ୍ରୁଘ୍ନ ଭୂଲିପଡ଼ି କୈକେୟୀଙ୍କ ବାରଣ ସତ୍ତ୍ୱେ ମନ୍ଥରାର କେଶ ଧରି ତାକୁ ଦ୍ୱିକୋଷ୍ଠ ମଧ୍ୟରେ ଘୋଷାରିଲେ । ଭରତ ବାଧା ନଦେଇଥିଲେ ସେ ତାକୁ ମାରିଦେଇଥାଆନ୍ତେ ।

ପରଦିନ ବଶିଷ୍ଠଙ୍କ ଡାକରା ପାଇ ଭରତ ରାଜଦରବାରରେ ଉପସ୍ଥିତ ହେଲେ । ବଶିଷ୍ଠ କହିଲେ, "ବର୍ତ୍ତମାନ ତୁମର ପିତା ସ୍ୱର୍ଗାରୋହଣ କରିଥିବାରୁ ଓ ଭ୍ରାତାଙ୍କ ଅନୁପସ୍ଥିତ



ଯୋଗୁଁ ତୁମର ହିଁ ରାଜମୁକୁଟ ଧାରଣ କରିବା ଉଚିତ । ତୁମର ଅଭିଷେକ ପାଇଁ ଶୁଭଦିନ ଠିକ୍ କରିବାକୁ ଅନୁମତି ଦିଅ ।"

ଭରତ ଖୁବ୍ ଗମ୍ଭୀର କିନ୍ତୁ ଆବେଗପୂର୍ଣ୍ଣ ସ୍ୱରରେ କହିଲେ, "ଆପଣ କିପରି ମତେ ଏ ପାପ କାର୍ଯ୍ୟ କରିବାକୁ କହୁଛନ୍ତି ? ଏ ରାଜ୍ୟ ନ୍ୟାୟତଃ ରାମଙ୍କର ।" ସମସ୍ତେ ଆନନ୍ଦରେ ହାତ ତାଳି ଦେବାକୁ ଲାଗିଲେ । "ମୁଁ ଯାଇ ମୋର ଜ୍ୟେଷ୍ଠ ଭ୍ରାତାଙ୍କୁ ଫେରାଇ ଆଣିବି । ଯଦି ସେଥିରେ ଅକୃତକାର୍ଯ୍ୟ ହୁଏ, ତେବେ ମୁଁ ମଧ୍ୟ ସେମାନଙ୍କ ସହ ଜଙ୍ଗଲରେ ବାସ କରିବି ।" ଭରତ ଦୃଢ଼ତା କରି କହିଲେ ।

ତାପରେ ସେ ସୁମନ୍ତ୍ରଙ୍କୁ ସୈନ୍ୟ ସଜ କରିବାକୁ କହି ଦରବାରର ସମସ୍ତଙ୍କୁ ତାଙ୍କ ସହ ରାମଙ୍କ ଅନ୍ୱେଷଣରେ ଯିବାପାଇଁ ଅନୁରୋଧ କଲେ ।



# ଚିତ୍ରକୂଟରେ ରାମ

ଗଙ୍ଗାନଦୀ ପାର ହେବା ପରେ ରାମ, ସୀତା ଓ ଲକ୍ଷ୍ମଣ ନଦୀ କୂଳେ କୂଳେ ଯାଇ ଯେଉଁଠାରେ ଗଙ୍ଗା ଯମୁନାର ମିଳନ ହୋଇଛି ସେଠାରେ ଥିବା ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ । ଭରଦ୍ୱାଜ ସେମାନଙ୍କୁ ସ୍ୱାଗତ କରି ତାଙ୍କର ବନବାସ ସମସ୍ତ ସେହି ଆଶ୍ରମରେ ଅତିବାହିତ କରିବାକୁ କହିଲେ । ରାମ ଉତ୍ତର ଦେଲେ, ''ଆପଣଙ୍କର ଅଶେଷ ଦୟା । କିନ୍ତୁ ମୋ ରାଜ୍ୟର ପ୍ରଜାମାନେ ମୁଁ ଏତେ ପାଖରେ ଅଛି ଜାଣିଲେ ମତେ ଅନୁସରଣ କରି ଏଠାକୁ ଆସିବେ । ଆପଣ ଅନ୍ୟ କୌଣସି ସ୍ଥାନ ଜାଣନ୍ତି କି ଯାହା ଏତେ ନିର୍ଜନ ଓ ଦୂର ହୋଇଥିବ ଯେ ସୀତା ସେଠାରେ ଆନନ୍ଦରେ ରହିପାରିବେ ।''





ଭରଦ୍ୱାଜ ସେମାନଙ୍କୁ ଚିତ୍ରକୂଟ ନାମରେ ଗୋଟିଏ ସୁନ୍ଦର ପର୍ବତର ନାମ କହିଲେ, ଯେଉଁଠାରେ କି ଗଛଲତା ସବୁ ଫଳ-ପୁଷ୍ପରେ ପରିପୂର୍ଣ୍ଣ ଥାଏ ଏବଂ ଝରଣା ସବୁ କୁଳୁକୁଳୁ ଶବ୍ଦକରି ବହିଯାଉଥାଏ । ତେଣୁ ରାମ, ଲକ୍ଷ୍ମଣ ଓ ସୀତା ଚିତ୍ରକୂଟ ପର୍ବତକୁ ଗଲେ । ସେ ସ୍ଥାନ ସେମାନଙ୍କୁ ଏତେ ଭଲ ଲାଗିଲା ଯେ ଲକ୍ଷ୍ମଣ ସେଠାରେ ରାମ ଓ ସୀତାଙ୍କ ପାଇଁ ଗୋଟିଏ କୁଟୀର ତିଆରି କରି-ଦେଲେ । ସମସ୍ତେ ସେଠାରେ ଆନନ୍ଦରେ ରହିଲେ ।

ଦିନେ ସେମାନେ ବସି କଥାବାର୍ତ୍ତା ହେଉଥିବା ବେଳେ ଲକ୍ଷ୍ୟ କଲେ ଯେ ବଣ୍ୟଜନ୍ତୁମାନେ ଅସ୍ଥିର ହୋଇ ଇତସ୍ତତ ଦଉଡ଼ୁଛନ୍ତି । ଲକ୍ଷ୍ମଣ ଗୋଟିଏ ବଡ଼ ଗଛ ଉପରେ ଚଢ଼ି ଚାରିଆଡ଼କୁ ଚାହିଁଲେ । ଉତ୍ତର ଦିଗରେ ପାହାଡ଼ର ପାଦଦେଶରେ ସୈନ୍ୟମାନେ ରଥ, ହାତୀ, ଘୋଡ଼ା ପ୍ରଭୃତି ସହ ଆସୁଥିବାର ସେ ଦେଖିଲେ ।

"ଦଳେ ସୈନ୍ୟ ଆସୁଛନ୍ତି", ଲକ୍ଷ୍ମଣ କହିଲେ । "ଆପଣ ନିଆଁ ଲିଭାଇଦେଇ ସୀତାଙ୍କୁ ନିରାପଦ ସ୍ଥାନକୁ ନେଇ ଧନୁଶର ସହିତ ପ୍ରସ୍ତୁତ ହୋଇ ରହନ୍ତୁ ।"

ରାମ ବ୍ୟଗ୍ର ହୋଇ ପଚାରିଲେ, "ତାହା କାହାର ସୈନ୍ୟ ତୁମେ ଦେଖି ପାରୁଛ ?"

ଲକ୍ଷ୍ମଣ ଭଲଭାବେ ନିରୀକ୍ଷଣ କରି ସାରି କହିଲେ, "ଭରତ ଆସୁଛନ୍ତି । ବର୍ତ୍ତମାନ ସେ ରାଜ୍ୟ ପାଇଥିବାରୁ ଆମକୁ ମାରି ଶାନ୍ତିରେ ରାଜତ୍ୱ କରିବାକୁ ଆସୁଛନ୍ତି । ମୁଁ ତାଙ୍କୁ ଜୀବନରେ ମାରିଦେବି । ଆପଣ ପୁଣି ଆପଣଙ୍କ ରାଜ୍ୟ ଫେରି ପାଇବେ ।"

"ଯଦି ଭରତ ହୋଇଥାନ୍ତି ତେବେ ମୋର ଧନୁଶର ପ୍ରସ୍ତୁତ କରି ରଖିବାର ଆବଶ୍ୟକତା ନାହିଁ । ମୋର ଦୃଢ଼ ବିଶ୍ୱାସ ସେ ଆମକୁ ଫେରାଇ ନେବାକୁ ଆସିଛନ୍ତି । ତା ଛଡ଼ା ମୁଁ ମୋ ଭାଇ ସହିତ ଯୁଦ୍ଧ କରିବାକୁ ଚାହେଁନା । କୌଣସି ରାଜ୍ୟ ବା ରାଜମୁକୁଟ ମୋର ଭାଇର ପ୍ରାଣଠାରୁ ମୂଲ୍ୟବାନ୍ ନୁହେଁ ।"—ଶାନ୍ତ ସ୍ୱରରେ କହିଲେ ରାମ ।

ସେମାନେ ଭରତଙ୍କ ପାଇଁ ଅପେକ୍ଷା କଲେ ।

ରାମ କେଉଁଠାରେ ମିଳିବେ ସେ କଥା ଭରଦ୍ୱାଜ ଭରତଙ୍କୁ କହିଥିଲେ । ଚିତ୍ରକୂଟରେ ପହଞ୍ଚିବା ପରେ ସେ ପାହାଡ଼ର ପାଦଦେଶରେ ସୈନ୍ୟ ଛାଉଣୀ କରିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଇ ରାମଙ୍କୁ ଖୋଜିବାପାଇଁ ପାହାଡ଼ ଉପରକୁ ଚଢ଼ିଲେ । ଚିତ୍ରକୂଟ ଜଙ୍ଗଲର ପ୍ରାକୃତିକ ସୌନ୍ଦର୍ଯ୍ୟ ତାଙ୍କର ମନକୁ ମୁଗ୍ଧ



କରିଥିଲେ । ସେତିକିବେଳେ ତାଙ୍କର ଆଖି ରାମ, ସୀତା ଓ ଲକ୍ଷ୍ମଣଙ୍କ ଉପରେ ପଡ଼ିଲା । ସେ ଦୌଡ଼ିଯାଇ ରାମଙ୍କ ପଦତଳେ ପଡ଼ିଗଲେ । "ହେ ପ୍ରଭୁ", ଏତିକି ମାତ୍ର ତାଙ୍କ କଣ୍ଠରୁ ବାହାରିଲା । ତା'ପରେ ଶତ୍ରୁଘ୍ନ ଆସି ରାମଙ୍କ ପଦତଳେ ପଡ଼ିଲେ । ରାମ ସ୍ନେହପୂର୍ଣ୍ଣ ନୟନରେ ସେମାନଙ୍କୁ ଉଠାଇ କୁଣ୍ଢାଇ ପକାଇଲେ ।

ଭଗ୍ନସ୍ୱରରେ ଭରତ କହିଲେ, "ହେ ଭାଇ, ମୁଁ ଅଶୁଭ ଖବର ନେଇ ଆସିଛି । ଆପଣ ଅସିବାର ଷଷ୍ଠ ଦିନରେ ପିତା ଦୁଃଖରେ ପ୍ରାଣତ୍ୟାଗ କଲେ ।" ଏହା ଶୁଣି ରାମ ଦୁଃଖରେ ଭାଙ୍ଗି ପଡ଼ିଲେ । ଭରତ ସେ ଦିନଟି ତାଙ୍କ ଭାଇମାନଙ୍କ ସହ ଅତିବାହିତ କରି ପରସ୍ପରକୁ ସାନ୍ତ୍ୱନା ଦେଲେ ।

ପରଦିନ ମନ୍ତ୍ରୀମାନଙ୍କ ଉପସ୍ଥିତିରେ ଭରତ ରାମଙ୍କୁ କହିଲେ, "ଆପଣ ଅଯୋଧ୍ୟା ଓ ଆପଣଙ୍କ ବିଷଣ୍ଣ ପ୍ରଜାମାନଙ୍କ ନିକଟକୁ ଫେରି ରାଜମୁକୁଟ ପରିଧାନ କରନ୍ତୁ ଯାହା କି ନ୍ୟାୟତଃ ଆପଣଙ୍କର ।"



ରାମ ଉତ୍ତର ଦେଲେ, ''ନାଁ ଭରତ, ପିତା ତାଙ୍କର ମୃତ୍ୟୁ ପୂର୍ବରୁ ତୁମକୁ ରାଜମୁକୁଟ ଦେଇ ମୋତେ ଚଉଦବର୍ଷ ବନବାସ ପାଇଁ ପଠାଇଥିଲେ । ତୁମେ ଯାଇ ଶାନ୍ତିପୂର୍ଣ୍ଣ ଭାବେ ରାଜ୍ୟଶାସନ କର । ପିତାଙ୍କର ଇଚ୍ଛା ପୂରଣ କରିବା ଆମର କର୍ତ୍ତବ୍ୟ ।"

ଭରତ ଦୁଃଖରେ କହିଲେ, "ଏ ସବୁ ମୋର ମାତାଙ୍କ ପାଇଁ ହୋଇଛି । ଏପରି ଭୁଲ ସର୍ବଦା ହୋଇ ନପାରେ । ଆପଣ ମୋ ସଙ୍ଗେ ବର୍ତ୍ତମାନ ଫେରି ଚାଲନ୍ତୁ ।''

କିନ୍ତୁ ରାମ ଦୃଢ଼ ସ୍ୱରରେ କହିଲେ, ''ଚନ୍ଦ୍ର ତାର ସୌନ୍ଦର୍ଯ୍ୟ, ହିମାଳୟ ତାର ବରଫ ହରାଇପାରେ, ସମୁଦ୍ର ତାର ସୀମା ଅତିକ୍ରମ କରିଯାଇପାରେ, କିନ୍ତୁ ମୁଁ ପିତାଙ୍କୁ ଦେଇଥିବା ବଚନ କେବେହେଲେ ଭାଙ୍ଗିବି ନାହିଁ । ଭରତ, ତୁମେ ଫେରିଯାଇ ଶତ୍ରୁଘ୍ନ ସାହାଯ୍ୟରେ ରାଜ୍ୟଶାସନ କର ।''

ଭରତ ଅତ୍ୟନ୍ତ ଦୁଃଖରେ କହିଲେ ''ତେବେ ଆପଣଙ୍କର କିଛି ସନ୍ତକ ମୋତେ ଦିଅନ୍ତୁ ଯାହାଦ୍ୱାରା କି ମୁଁ ଆପଣଙ୍କ ନାମରେ ରାଜ୍ୟଶାସନ କରିପାରିବି ।'' ରାମ ଖୁସୀ ହୋଇ ତାଙ୍କ ନିଜର କଠଉ ଦୁଇଟି ଦେଲେ । ଭରତ ସେ ଦୁଇଟି ଖୁବ୍ ସମ୍ମାନର ସହିତ ମୁଣ୍ଡରେ ଲଗାଇ କହିଲେ, ''ମୁଁ ଏହି କଠଉ ଦୁଇଟି ସିଂହାସନ ଉପରେ ରଖି ଆପଣଙ୍କ ନାମରେ ରାଜ୍ୟଶାସନ କରିବି । କିନ୍ତୁ ଆପଣ ଯଦି ଚଉଦବର୍ଷ ପରେ ନ ଫେରନ୍ତି ତେବେ ମୁଁ ଅଗ୍ନିରେ ଝାସ ଦେଇ ମୃତ୍ୟୁ ବରଣ କରିବି ।"

ଏହା କହି ଭରତ ଅତି ଦୁଃଖରେ ଫେରିଲେ । ଅଯୋଧ୍ୟାରେ ପହଞ୍ଚି ରାମଙ୍କ କଠଉ ସିଂହାସନରେ ରଖି ରାମଙ୍କ ନାମରେ ଚଉଦବର୍ଷ ପର୍ଯ୍ୟନ୍ତ ଖୁବ୍ ଦକ୍ଷତାର ସହିତ ରାଜ୍ୟଶାସନ କଲେ । ଏହି ସମସ୍ତ ଭିତରେ ସେ ଅଯୋଧ୍ୟାରେ ନ ରହି ନନ୍ଦିଗ୍ରାମରେ ରହୁଥିଲେ । ରାମ ଓ ଲକ୍ଷ୍ମଣଙ୍କ ପରି ଭରତ ମଧ୍ୟ ଜଣେ ସନ୍ନ୍ୟାସୀର ଜୀବନ ଯାପନ କରୁଥିଲେ ।



# ପଞ୍ଚବଟୀରେ ରାମ

ଭରତ ଚାଲିଯିବା ପରେ ଚିତ୍ରକୂଟରେ ରହିବା ରାମଙ୍କ ପକ୍ଷରେ ଅସହ୍ୟ ହୋଇ-ଯାଇଥିଲା । ତେଣୁ ସୀତା ଓ ଲକ୍ଷ୍ମଣଙ୍କ ସହ ସେ ଦଣ୍ଡକାରଣ୍ୟକୁ ଗଲେ । ସେ ଜଙ୍ଗଲରେ ବହୁତ ରାକ୍ଷସ ରହୁଥିଲେ । ଏହି ରାକ୍ଷସମାନେ ସେଠାରେ ରହୁଥିବା ମୁନିଋଷିମାନଙ୍କୁ ସର୍ବଦା ହଇରାଣ କରୁଥିଲେ ।

ଋଷିମାନେ ରାମଙ୍କୁ ଦେଖି ଖୁସି ହେଲେ । ସେମାନେ ତାଙ୍କୁ ସ୍ୱାଗତ କରି କହିଲେ, "ହେ ଶକ୍ତିମାନ୍ ରାଜପୁତ୍ର, ଯେଉଁ ଦୁଷ୍ଟ ରାକ୍ଷସମାନେ ଜୀବଜନ୍ତୁଙ୍କୁ ମାରି ଆମର ପବିତ୍ର ପୂଜାସ୍ଥାନକୁ ଅପବିତ୍ର କରୁଛନ୍ତି ସେମାନଙ୍କଠାରୁ ଆମକୁ ରକ୍ଷା କରିବାକୁ ଭଗବାନ ତୁମକୁ ପଠାଇଛନ୍ତି ।"

ଦଶବର୍ଷକାଳ ସେମାନେ ଏହି ଜଙ୍ଗଲରେ ରହିଲେ । ଦଣ୍ଡକାରଣ୍ୟ ରାକ୍ଷସ ମୁକ୍ତ ହୋଇ ମୁନିମାନେ ଶାନ୍ତିରେ ତପସ୍ୟା କରିପାରିବା ପର୍ଯ୍ୟନ୍ତ ସେମାନେ ଗୋଟିଏ ଆଶ୍ରମରୁ ଆଉ ଗୋଟିଏ ଆଶ୍ରମ ବୁଲିଲେ ।

ଶେଷରେ ସେମାନେ ମହାମୁନି ଅଗସ୍ତ୍ୟଙ୍କ ଆଶ୍ରମରେ ପହଞ୍ଚିଲେ । ସେ ସେମାନଙ୍କୁ ଆଶୀର୍ବାଦ କରି ତାଙ୍କର ବାକି ବନବାସ ସମୟତକ ଗୋଦାବରୀ ନଦୀ କୂଳରେ ଥିବା ପଞ୍ଚବଟୀ ବଣରେ ଅତିବାହିତ କରିବାକୁ ଉପଦେଶ ଦେଇଥିଲେ ।

ତେଣୁ ସେମାନେ ପଞ୍ଚବଟୀକୁ ଗଲେ ଯେଉଁଠାରେ କି ମୟୂରମାନେ ନୃତ୍ୟ କରୁଥିଲେ ଓ ଜୀବଜନ୍ତୁମାନେ ନିର୍ଭୟରେ ବିଚରଣ କରୁଥିଲେ । ସେ ଜଙ୍ଗଲରେ ବୃକ୍ଷସବୁ ଫୁଲ ଓ ଫଳରେ ପରିପୂର୍ଣ୍ଣ ଥିଲା । ସେମାନେ ସେଠାରେ ଖୁବ୍ ଆନନ୍ଦର ସହିତ ବସବାସ କଲେ ।

ଦିନେ ଲଙ୍କାର ରାକ୍ଷସରାଜା ରାବଣର ଭଉଣୀ ସୂର୍ପଣଖା ଜଙ୍ଗଲକୁ ଆସି ଦୁଇ ସୁନ୍ଦର ରାଜପୁତ୍ରଙ୍କୁ ଦେଖିଲା । ସେମାନେ କିଏ ତାହା ସେ ଜାଣି ନ ଥିଲା । କିନ୍ତୁ ସେମାନେ କିପରି ଏ ରାକ୍ଷସପୂର୍ଣ୍ଣ ଜଙ୍ଗଲକୁ ଆସିବାକୁ ସାହସ କଲେ ତାହା ଭାବି ଆଶ୍ଚର୍ଯ୍ୟ ହେଉଥିଲା ।



ସେ ମନେ ମନେ ଦୁଇଜଣଙ୍କୁ ଭଲ ପାଇବାକୁ ଲାଗିଲା । ପ୍ରଥମେ ସେ ରାମଙ୍କୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କଲା । ରାମଚନ୍ଦ୍ର ଭଦ୍ରଭାବରେ ତାକୁ ମନା କରି ଦେବାରୁ ସେ ତାକୁ ବିବାହ କରିବାକୁ ଲକ୍ଷ୍ମଣଙ୍କୁ ପ୍ରସ୍ତାବ ଦେଲା । ରାମ ପରିହାସରେ କହିଲେ, "ମୁଁ କିପରି ତୁମକୁ ବିବାହ କରିପାରେ ? ଦେଖ ମୋ ସ୍ତ୍ରୀ ଏଠାରେ ଅଛନ୍ତି ।" ତାପରେ ଲକ୍ଷ୍ମଣ ସେହିପରି କହିଲେ, "ମୁଁ କେବଳ ରାମଙ୍କ ଭୃତ୍ୟ । ତେଣୁ ମୋ ସ୍ତ୍ରୀ ଜଣେ ଭୃତ୍ୟର ଭୃତ୍ୟ ହେବ ।"

ସେମାନେ ଯେ ତାକୁ ଥଟ୍ଟା କରୁଛନ୍ତି ଏକଥା ସୂର୍ପଣଖା ବୁଝି ନପାରି କହିଲା, "ରାମ, ମୁଁ ତୁମର ସ୍ତ୍ରୀକୁ ଖାଇଦେବି । ତାପରେ ତୁମେ ମୋତେ ବିବାହ କରିପାରିବ ।" ଏହା କହି ସେ ସୀତାଙ୍କ ଆଡ଼କୁ ଦୌଡ଼ିଗଲା ।

ରାମ ତାକୁ ଧରିପକାଇ କହିଲେ, "ଏପରି ବିପଜ୍ଜନକ ସ୍ତ୍ରୀ ସହିତ ଥଟ୍ଟା କରିବା ଉଚିତ ନୁହେଁ ।" କିନ୍ତୁ ଲକ୍ଷ୍ମଣ ପ୍ରକୃତରେ ଖୁବ୍ ରାଗିଯାଇ ସୂର୍ପଣଖାର ନାକ ଓ କାନ କାଟିପକାଇଲେ ।

ସୂର୍ପଣଖା କ୍ରୋଧ ଓ ଯନ୍ତ୍ରଣାରେ ଚିତ୍କାର କରି, ପ୍ରତିଶୋଧ ଦାବି କରି, ତାର ଭାଇ ଖର ଓ ଦୁଷଣଙ୍କ ନିକଟକୁ ଦୌଡ଼ିଗଲା ।

ରାମ ଜାଣିଥିଲେ ଯେ ଅସୁରମାନେ ତାଙ୍କୁ ମାରିବାକୁ ଆସିବେ । ସେଥିପାଇଁ ସେ ପ୍ରସ୍ତୁତ ହୋଇ ରହିଲେ । ଲକ୍ଷ୍ମଣଙ୍କ ସହିତ ସୀତାଙ୍କୁ ଗୋଟିଏ ନିରାପଦ ସ୍ଥାନକୁ ପଠାଇଦେଲେ । ଲକ୍ଷ୍ମଣ ନିଜେ ସେମାନଙ୍କ ସହିତ ଯୁଦ୍ଧ କରିବାକୁ ଚାହୁଁଥିଲେ । ସେ ରାମଙ୍କୁ କହିଲେ, "ଆପଣ ସୀତାଙ୍କୁ ନେଇଯାଆନ୍ତୁ ଓ ମୋତେ ରାକ୍ଷସମାନଙ୍କୁ ଭେଟିବାକୁ ଅନୁମତି ଦିଅନ୍ତୁ ।" କିନ୍ତୁ ରାମ ତାଙ୍କ କଥା ଶୁଣିଲେ ନାହିଁ ।

ଖୁବ୍ ଶୀଘ୍ର ଖର ଓ ଦୁଷଣ ବହୁ ରାକ୍ଷସଙ୍କ ସାଙ୍ଗରେ ଘୋର ଚିତ୍କାର ସହ ଧୂଳି ଉଡ଼ାଇ ଆସି ପହଞ୍ଚିଲେ । କିନ୍ତୁ ରାମଙ୍କ ସହ ସେମାନଙ୍କର ତୁଳନା କାହିଁ ? ରାମ ସମସ୍ତଙ୍କୁ ମାରିଦେଲେ । ସୂର୍ପଣଖା ଦୂରରୁ ରାମଙ୍କ ନିର୍ଭୀକତା ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ





ଯନ୍ତ୍ରଣାରେ ଚିତ୍କାର କରି ତାର ବଡ଼ଭାଇ ରାବଣଙ୍କୁ ଏ ସ୍ତ୍ରୀ ବିଷୟରେ କହିବାକୁ ଜଙ୍ଗଲ ମଧ୍ୟ ଦେଇ ଦୌଡ଼ି ଚାଲିଗଲା ।

ରାବଣ ସବୁ ଶୁଣି କ୍ରୋଧାନ୍ୱିତ ହୋଇ ଗର୍ଜନ କରି କହିଲା, "ତୁମେ କଣ କହୁଛ ? ଜଣେ ଲୋକ ଏକାକୀ ସମସ୍ତଙ୍କ ପ୍ରାଣ ନାଶ କଲା ? ଏହା କିପରି ସମ୍ଭବ ହୋଇପାରେ !"

"ସେମାନେ ସାଧାରଣ ଲୋକ ନୁହଁନ୍ତି" କହିଲା ସୂର୍ପଣଖା । ସେମାନେ ଖୁବ୍ ସାହସୀ ଓ ବୀର, କିନ୍ତୁ ଦରିଦ୍ର; କାରଣ ସେମାନେ ଗଛର ବକଳ ପିନ୍ଧି କୁଟୀରରେ ବାସ କରୁଛନ୍ତି । ସୀତା ଖୁବ୍ ସୁନ୍ଦରୀ । ତାଙ୍କର ରାମ ସହ କୁଟୀରରେ ନ ରହି ଲଙ୍କାର ରାଣୀ ଭାବରେ ସୁବର୍ଣ୍ଣ ପ୍ରାସାଦରେ ରହିବା ଉଚିତ ।"

ରାବଣ ତାର ଭଉଣୀ ଅପମାନର ପ୍ରତିଶୋଧ ନେବା ପାଇଁ ଉପାୟ ଖୋଜିବାକୁ ଲାଗିଲା ।

ସେ ଧଳାଘୋଡ଼ା ଦ୍ୱାରା ଟଣା ହେଉଥିବା ରଥରେ ବସି ତା'ର ମାମୁଁ ଧୂର୍ତ୍ତ ମାରୀଚ ନିକଟକୁ ଗଲା । ମାରୀଚ ନିଜ ଇଚ୍ଛାରେ ଯେକୌଣସି ରୂପରେ ନିଜ ଶରୀରକୁ ବଦଳାଇଦେଇପାରେ ।

ରାବଣ କହିଲା, "ତୁମେ ସ୍ୱର୍ଣ୍ଣମୃଗ ହୋଇ ପଞ୍ଚବଟୀରେ ସୀତାଙ୍କ କୁଟୀର ଆଗରେ ଖେଳ । ସେହି ସ୍ୱର୍ଣ୍ଣମୃଗ ଧରି ତାଙ୍କ ପାଇଁ ଆଣି ଦେବାକୁ ସୀତା ନିଶ୍ଚୟ ରାମଙ୍କୁ ଅନୁରୋଧ କରିବେ । ତା'ପରେ ତୁମେ ଜଙ୍ଗଲର ଅନ୍ୟ ପାଖକୁ ଦୌଡ଼ି ପଳାଇଲେ ରାମ ତୁମକୁ ଅନୁସରଣ କରିବେ । କିଛି ଦୂର ଗଲା ପରେ ତୁମେ ରାମଙ୍କ ସ୍ୱର ଅନୁକରଣ କରି ଲକ୍ଷ୍ମଣଙ୍କୁ ସାହାଯ୍ୟ ପାଇଁ ଡାକିବ । ଲକ୍ଷ୍ମଣ ସୀତାଙ୍କୁ ଏକୁଟିଆ ଛାଡ଼ି ତାଙ୍କ ଭାଇଙ୍କ ସାହାଯ୍ୟ ପାଇଁ

ଯିବେ । ସେତେବେଳେ ମୁଁ ଜଣେ ସନ୍ନ୍ୟାସୀର ଛଦ୍ମବେଶରେ ସୀତାଙ୍କୁ ଚୋରାଇ ନେଇଯିବ ।'

ମାରୀଚ ଭୟଭୀତ ହୋଇ ଏପରି କରିବାକୁ ରାଜି ହେଉନଥିଲା; କିନ୍ତୁ ରାବଣ ଜିଦ୍ କରି କହିଲା, "ଏହା କଲେ ତୁମେ ପୁରସ୍କୃତ ହେବ ଏବଂ ନ କଲେ ମୃତ୍ୟୁ ବରଣ କରିବ ।" ମାରୀଚର ରାବଣ କଥା ମାନିବା ଛଡ଼ା ଅନ୍ୟ ଉପାୟ ନଥିଲା ।

ସୀତା ସ୍ୱର୍ଣ୍ଣଚର୍ମ ଉପରେ ମୂଲ୍ୟବାନ୍ ପ୍ରସ୍ତର ଖଚିତ ମୃଗ ଦେଖି ତାହା ସେ ଚାହାନ୍ତି ବୋଲି କହିଲେ । କିନ୍ତୁ ଲକ୍ଷ୍ମଣଙ୍କର ସନ୍ଦେହ ହେଲା । ସେ କହିଲେ, "ହେ ଭାଇ, ଆପଣ ସେ ଆଡ଼େ ଧ୍ୟାନ ଦିଅନ୍ତୁନାହିଁ । ଏହା କେବଳ ରାକ୍ଷସର ମାୟା ।"

କିନ୍ତୁ ସୀତା ରାମଙ୍କୁ ବାଧ୍ୟ କରି କହିଲେ, "ହେ ପ୍ରଭୁ, ଆପଣ ଯାଆନ୍ତୁ । ଯଦି ତାକୁ ଧରି ନ ପାରନ୍ତି ତେବେ ତାକୁ ଶରରେ ମାରି ମୋ ପାଇଁ ଆଣନ୍ତୁ । ତାହାର ଚର୍ମ ଖୁବ୍ ସୁନ୍ଦର ।"

ସୀତା ତାଙ୍କପାଇଁ କେତେ କଷ୍ଟ ସହୁଛନ୍ତି ଭାବି ତାଙ୍କୁ ମନା କରି ନ ପାରି ଶେଷରେ ରାମ ରାଜି ହେଲେ । ସେ ତାଙ୍କର ଧନୁଶର ଧରି ଲକ୍ଷ୍ମଣଙ୍କୁ କହିଲେ, "ସୀତାଙ୍କୁ ଜଗି ରହିବ । କେବେହେଲେ ତାଙ୍କୁ ଏକାକୀ



ଏଠାରେ ଛାଡ଼ବନ ।" ଏହା କହି ସେ ଦୌଡ଼ିବାକୁ ଆରମ୍ଭ କରିଥିବା ସ୍ୱର୍ଣ୍ଣମୃଗ ପଛରେ ଗଲେ ।

ଏହାହିଁ ରାବଣ ପୂର୍ବରୁ ଚାହୁଁଥିଲ । ରାମ ଯେତେବେଳେ ଦେଖିଲେ ଯେ ସେ ମୃଗକୁ ଧରି ପାରୁ ନାହାନ୍ତି ତାକୁ ଶର ମାରିଲେ । ଯେତେବେଳେ ମାରୀଚର ହୃଦୟ ଶରବିଦ୍ଧ ହେଲ ସେ ପୁନର୍ବାର ମନୁଷ୍ୟ ରୂପ ଧରି ରାମଙ୍କ ସ୍ୱରରେ ' ହେ ଲକ୍ଷ୍ମଣ ବଞ୍ଚାଅ" କହି ପ୍ରାଣ ତ୍ୟାଗ କଲ ।

ଏହା ତାଙ୍କୁ ଦୂରକୁ ନେଇଯିବାର ଗୋଟିଏ ଚାତୁରୀ ବୋଲି ରାମ ସଙ୍ଗେ ସଙ୍ଗେ ଜାଣିପାରିଲେ । ଘୋର ଅନିଷ୍ଟର ସୂଚନା ଦେଖି ସେ ସଙ୍ଗେ ସଙ୍ଗେ କୁଟୀରକୁ ଫେରିଲେ ।

ମାରୀଚର ମୃତ୍ୟୁ ବେଳର ଚିତ୍କାର ସୀତାଙ୍କ କର୍ଣ୍ଣଗୋଚର ହୋଇଥିଲ । ସେ ଅତି ଭୟଭୀତ ହୋଇ କାନ୍ଦି କାନ୍ଦି କହିଲେ, "ହେ ଲକ୍ଷ୍ମଣ, ତୁମର ଭ୍ରାତା ବିପଦମୁଖରେ ପଡ଼ିଛନ୍ତି । ତୁମେ ଯାଇ ତାଙ୍କୁ ରକ୍ଷାକର ।"

"ନାଁ, ଏହା କେବଳ ମତେ ଏଠାରୁ ଦୂରକୁ ନେଇଯିବାର ଛଳନା ।"—ଉତ୍ତର ଦେଲେ ଲକ୍ଷ୍ମଣ ।

ସୀତା ରାଗିଯାଇ ଲକ୍ଷ୍ମଣଙ୍କୁ ଆକ୍ଷେପ କରି କହିଲେ, "ତୁମେ କ'ଣ ରାମଙ୍କର ମୃତ୍ୟୁ ହେବା ଚାହଁ ?"

ଲକ୍ଷ୍ମଣ ଏହା ଶୁଣି ଖୁବ୍ ଆଘାତ ପାଇଲେ । "ତୁମ ଭାଗ୍ୟରେ କି ଅମଙ୍ଗଳ ଅଛି ତାହା ଈଶ୍ୱର୍ ଜାଣନ୍ତି",—ଏହା କହି ସେ ସୀତାଙ୍କୁ ଛାଡ଼ି ଚାଲିଗଲେ ।



# ରାବଣ ସୀତାଙ୍କୁ ଅପହରଣ କଲା

ଲକ୍ଷ୍ମଣ ଆଖି ଆଗରୁ ଅପସରି ଯାଇଛନ୍ତି କି ନାହିଁ ରାବଣ ସନ୍ନ୍ୟାସୀ ବେଶରେ ଦେଖାଦେଲା । ସୀତା ତାଙ୍କୁ ଅତି ବିନୀତ ଭାବରେ ସ୍ୱାଗତ ଜଣାଇଲେ ।

"ତୁମେ କିଏ ? ଏଇ ରାକ୍ଷସପୂର୍ଣ୍ଣ ଜଙ୍ଗଲରେ ତୁମେ କାହିଁକି ଏକାକୀ ରହୁଛ ?" —ପଚାରିଲା ରାବଣ ।

ସୀତା ଭାବିଲେ ସେ ଉତ୍ତର ନ ଦେଲେ ସନ୍ନ୍ୟାସୀ ହୁଏତ ନିଜକୁ ଅପମାନିତ ମନେ କରି ପାରନ୍ତି ଓ ତାଙ୍କୁ ଅଭିଶାପ ଦେଇ ପାରନ୍ତି । ସେଥିପାଇଁ ସେ କିଏ ଓ କାହିଁକି ଜଙ୍ଗଲରେ ବାସ କରୁଛନ୍ତି ସବୁ ବିଷୟ କହିଲେ ।

ସୀତା, ତାପରେ ପଚାରିଲେ, "ଆପଣ କିଏ ? ଆପଣ କାହିଁକି ଏ ରାକ୍ଷସପୂର୍ଣ୍ଣ ଜଙ୍ଗଲରେ ଏକାକୀ ବୁଲୁଛନ୍ତି ?"

"ମୁଁ ରାକ୍ଷସମାନଙ୍କ ରାଜା ରାବଣ", ସେ ଉତ୍ତର ଦେଲା । "ଦେବତାମାନେ ମଧ୍ୟ ମୋ ନାମ ଶୁଣିଲେ ଭୟରେ ଥରହର ହୁଅନ୍ତି । ମୁଁ ତୁମକୁ ସ୍ୱର୍ଣ୍ଣନଗରୀ ଲଙ୍କାର ରାଣୀ କରି ରଖିବାକୁ ଚାହେଁ ।"

ସୀତା ରାଗି ନିଆଁ ହୋଇଗଲେ । ସେ ଗର୍ବର ସହିତ କହିଲେ, "ମୁଁ ରାମଙ୍କ ସ୍ତ୍ରୀ । ତୁମେ ଚାଲିଯାଅ, ନଚେତ୍ ନିଜକୁ ଧ୍ୱଂସ ମୁଖରେ ପକାଇବ ।"

କିନ୍ତୁ ରାବଣ ତାଙ୍କୁ ଜବରଦସ୍ତି ଧରି ତାର ରଥ ପାଖକୁ ଟାଣି ଟାଣି ନେଇଗଲା । ସୀତା ରାମ ଓ ଲକ୍ଷ୍ମଣଙ୍କୁ ତାଙ୍କୁ ରକ୍ଷା କରିବା ପାଇଁ ଡାକ ଡାକ ଅଙ୍କର ସାଧ୍ୟମତେ ରାବଣର ପ୍ରତିରୋଧ କଲେ; କିନ୍ତୁ ରାମ ଓ ଲକ୍ଷ୍ମଣ ବହୁତ ଦୂରରେ ଥିଲେ ।

ଦୁଷ୍ଟ ରାବଣ ତାଙ୍କୁ ରଥ ମଧ୍ୟକୁ ଟେକି ନେଇ ରଥ ଚଳେଇ ଚାଲିଗଲା । ଜଟାୟୁ ନାମକ ପକ୍ଷୀ, ଯେ କି ଦଶରଥଙ୍କର ବନ୍ଧୁ ଥିଲା, ସେ ରାବଣକୁ ଆକ୍ରମଣ କଲା । ସେ ନିକଟରେ ନିଦ୍ରା ଯାଇଥିବାରୁ ସୀତାଙ୍କର କ୍ରନ୍ଦନ ଶୁଣି ତାର ନିଦ୍ରା ଭାଙ୍ଗିଗଲା । ସେ ଭୀଷଣ ଭାବରେ ଯୁଦ୍ଧ କରି ରାବଣର ରଥ ଭାଙ୍ଗି ଦେଇଥିଲା ଏବଂ ରଥର ସାରଥୀ ଓ ଅଶ୍ୱମାନଙ୍କୁ ମାରି ଦେଇଥିଲା । କିନ୍ତୁ ଜଟାୟୁ ବୃଦ୍ଧ ହୋଇଯାଇଥିବାରୁ ରାବଣ ସାଙ୍ଗରେ ତାର ତୁଳନା

ନଥିଲା । ରାବଣ ତା'ର ପକ୍ଷୀ କାଟିଦେଇ ଅର୍ଦ୍ଧମୃତ ଅବସ୍ଥାରେ ଭୂମି ଉପରେ ପକାଇ ଦେଲା ଓ ସୀତାଙ୍କୁ କୋଳ୍‌ରେ ଭିଡ଼ି ଧରି ଦକ୍ଷିଣ ଆଡ଼କୁ ଉଡ଼ି ଚାଲିଗଲା ।

ସୀତା ବୁଝିପାରିଲେ ଯେ ବର୍ତ୍ତମାନ ତାଙ୍କୁ ରକ୍ଷା କରିବା ପାଇଁ ଆଉ କେହି ଆସି ପାରିବେ ନାହିଁ । ସେ ଉଦ୍‌ଭ୍ରାନ୍ତ ହୋଇ କରୁଣ ସ୍ୱରରେ ଚାରିଆଡ଼କୁ ଚାହିଁବାକୁ ଲାଗିଲେ । ତଳେ ଗୋଟିଏ ପାହାଡ଼ ଉପରେ ବସିଥିବା ପାଞ୍ଚଟି ମାଙ୍କଡ଼ଙ୍କ ଉପରେ ତାଙ୍କର ଆଖି ପଡ଼ିଲା । ସୀତା ସଙ୍ଗେ ସଙ୍ଗେ ତାଙ୍କର ଓଢ଼ଣୀ, ଗୋଡ଼ର ବଳା ଓ ଅଳଙ୍କାର ସବୁ ଗୋଟିକ ପରେ ଗୋଟିଏ ତଳକୁ ଫୋପାଡ଼ିବାକୁ ଲାଗିଲେ । ରାମ ଓ ଲକ୍ଷ୍ମଣ ଯେ ତାଙ୍କୁ ଖୋଜିବାକୁ ଖୁବ୍ ଶୀଘ୍ର ଆସିବେ ସେ ବିଷୟରେ ସେ ନିଶ୍ଚିତ ଥିଲେ । ସେମାନେ ଯଦି ମାଙ୍କଡ଼ମାନଙ୍କୁ ଭେଟି ସେମାନଙ୍କ ନିକଟରେ ତାଙ୍କର ଅଳଙ୍କାର ଗୁଡ଼ିକ ଦେଖିବେ ତା' ହେଲେ ରାବଣ ତାଙ୍କୁ କେଉଁ ଦିଗକୁ ନେଇଯାଇଛି ତାହା ଜାଣିପାରିବେ ।

ଖୁବ୍ ଶୀଘ୍ର ରାବଣ ଯାଇ ଲଙ୍କାରେ ପହଞ୍ଚିଲା । ସେ ସୀତାଙ୍କ ଆଡ଼କୁ ଚାହିଁ କହିଲା, "ହେ ସୀତା, ତୁମେ ବର୍ତ୍ତମାନ ମୋର ରାଣୀ ହୋଇ ସ୍ୱର୍ଣ୍ଣନଗରୀ ଲଙ୍କାରେ ରାଜତ୍ୱ





କରିବାକୁ ଚାହିଁ ନାହିଁ। ରାମଙ୍କ ପାଇଁ ଅପେକ୍ଷା କରିବାକୁ ଚାହିଁ, ସେ କି କେବେହେଲେ ତୁମକୁ ଏଠାରୁ ଉଦ୍ଧାର କରିବାକୁ ସମର୍ଥ ହେବ ନାହିଁ—ତାହା ତୁମେ ସ୍ଥିର କର।"

ସୀତା ଦମ୍ଭର ସହିତ ଉତ୍ତର ଦେଲେ, "ମୁଁ ରାମଙ୍କ ସ୍ତ୍ରୀ। ତୁମର ଧନ ସମ୍ପତ୍ତି ମୋର ଲୋଡ଼ା ନାହିଁ।"

ରାବଣ ସୀତାଙ୍କୁ ରାକ୍ଷସୀମାନଙ୍କ ଦାୟିତ୍ୱରେ ଛାଡ଼ି ସେମାନଙ୍କୁ ଆଦେଶ ଦେଲା, "ତାଙ୍କୁ ଆଘାତ କରିବ ନାହିଁ। ଯଦି ସେ ବସ୍ତ୍ର ବା ଅଳଙ୍କାର ଚାହାଁନ୍ତି ତେବେ ସବୁଠାରୁ ଯାହା ସୁନ୍ଦର ତାହା ଦେବ। କିନ୍ତୁ ତାଙ୍କୁ କାହା ସହିତ ଦେଖା ସାକ୍ଷାତ ବା କଥାବାର୍ତ୍ତା କରିବାକୁ ଦେବ ନାହିଁ।"

ରାବଣ ତାର ରାଜପ୍ରାସାଦକୁ ଫେରି ସବୁଠାରୁ ବଳବାନ୍ ଓ ସାହସୀ ଆଠଜଣ ରାକ୍ଷସଙ୍କୁ ଡକାଇ ସେମାନଙ୍କୁ କହିଲା, "ରାମ ଓ ଲକ୍ଷ୍ମଣ ବାସ କରୁଥିବା ସ୍ଥାନକୁ ଯାଇ ସେମାନଙ୍କ ଉପରେ ଦୃଷ୍ଟି ରଖ। ସୁବିଧା ପାଇବା ମାତ୍ରେ ରାମକୁ ଜୀବନରେ ମାରିଦିଅ।"

ରାବଣ ସୀତାଙ୍କ ନିକଟକୁ ଫେରି ତାର ସୁନ୍ଦର ରାଜପ୍ରାସାଦ ମଧ୍ୟରେ ଥିବା ବହୁମୂଲ୍ୟ ସମ୍ପତ୍ତି ସବୁ ନିଜ ଅକ୍ଷିରେ ଦେଖିବାକୁ ତାଙ୍କୁ ବାଧ୍ୟ କଲା। ସେ ଭାବିଥିଲା ତାହା ସୀତାଙ୍କୁ ପ୍ରଲୋଭିତ କରିବ। କିନ୍ତୁ ଯେତେବେଳେ ରାବଣ କହିଲା "ସୀତା, ମୋର ରାଣୀ ହେଲେ ଏ ସବୁ ସମ୍ପତ୍ତି ତୁମର ହେବ"—ସେତେବେଳେ ସୀତା ତାକୁ ଅତି ଅବଜ୍ଞା ଭାବରେ ଧିକ୍କାର କଲେ।

"ତା କେବେହେଲେ ହୋଇ ପାରେନା । ମୁଁ ରାମଙ୍କ ସ୍ତ୍ରୀ । ସେ ଆସି ମୋତେ ଉଦ୍ଧାର କରିବେ ଓ ତତେ ମାରି ଲଙ୍କାକୁ ଧ୍ୱଂସ କରିବେ । ମତେ ଜୀବନରେ ମାରିଦେଲେ ସୁଦ୍ଧା ମୁଁ କେବେହେଲେ ତୋର ରାଣୀ ହୋଇ ପାରିବ ନାହିଁ ।" ସୀତା କ୍ରୋଧରେ କହିଲେ ।

ଏହା ଶୁଣି ରାବଣର ରାଗର ସୀମା ରହିଲା ନାହିଁ । ସେ ରୁକ୍ଷ ସ୍ୱରରେ କହିଲା, "ଶୁଣ, ମୁଁ ତୁମକୁ ଗୋଟିଏ ବର୍ଷ ସମୟ ଦେଉଛି । ତୁମେ ଯଦି ତଥାପି ସମ୍ମତ ନହୁଅ ତେବେ ତୁମକୁ ଜୀବନରେ ମାରି ତୁମର ମାଂସ ଖଣ୍ଡ ଖଣ୍ଡ କରି କାଟି ମୋର ପ୍ରାତଃଭୋଜନ ପାଇଁ ରନ୍ଧାହେବ ।"



ରାବଣ ଏହା କହି ଅଶୋକବନରେ ସୀତାଙ୍କୁ ବନ୍ଦୀକରି ରଖିବା ପାଇଁ ରାକ୍ଷସୀମାନଙ୍କୁ ଆଦେଶ ଦେଇ ଝଡ଼ପରି ବାହାରି ଗଲା । "ତାକୁ ମାର ନାହିଁ ବା ଆଘାତ କରନାହିଁ; କିନ୍ତୁ ତାର ଗର୍ବ ଭାଙ୍ଗି ଦିଅ ।" —ସେ କହିଗଲା ।

କିନ୍ତୁ ରାକ୍ଷସୀମାନେ ସୀତାଙ୍କୁ ବହୁତ ଅପମାନିତ କରି ଓ ତାଙ୍କ ଉପରେ ସବୁ ରକମର ଅତ୍ୟାଚାର କରି ମଧ୍ୟ ତାଙ୍କର ମନ ପରିବର୍ତ୍ତନ କରି ପାରିଲେ ନାହିଁ ।

ଏହି ସମୟରେ ରାମ କୁଟୀର ଆଡ଼କୁ ଅଧାବାଟ ଆସିବା ପରେ ଲକ୍ଷ୍ମଣଙ୍କୁ ତାଙ୍କ ନିକଟକୁ ଯାଉଥିବାର ଦେଖିଲେ । ତାଙ୍କୁ ଦେଖିବା ମାତ୍ରେ ରାମ ଜାଣିପାରିଲେ ଯେ ସେ ଯାହା ଆଶଙ୍କା କରୁଥିଲେ ତାହାହିଁ ଘଟିଛି ।

ସେ ଲକ୍ଷ୍ମଣଙ୍କଠାରୁ ସବୁ ବିଷୟ ଶୁଣି କହିଲେ, "ତୁମର ଜଣେ କୁପିତ ନାରୀ କଥା ଶୁଣିବା ଉଚିତ ନଥିଲା । ବର୍ତ୍ତମାନ ଆଉ ଡେରି ନ କରି ଚାଲ ଯିବା ।" ସେମାନେ ଯେତେବେଳେ କୁଟୀର ନିକଟରେ ପହଞ୍ଚିଲେ ତାହା ଏତେ ନିର୍ଜନ ଜଣାପଡ଼ୁଥିଲା ଯେ ରାମ, "ସୀତା, ସୀତା, ତୁମେ କେଉଁଠାରେ ?" କହି କାନ୍ଦି ଉଠିଲେ । ଗଛ ମଧ୍ୟରେ ପବନର ସାଇଁ ସାଇଁ ଶବ୍ଦ ଛଡ଼ା ଆଉ କିଛି ଉତ୍ତର ମିଳିଲା ନାହିଁ । ସୀତାଙ୍କ ନାମ ଧରି ଡାକି ଡାକି ସେମାନେ ଚାରିଆଡ଼େ ଖୋଜିଲେ । ଦୁଃଖରେ ମ୍ରିୟମାଣ ହୋଇ ସେମାନେ ଜଙ୍ଗଲରେ ସେମାନଙ୍କର ସବୁ ପ୍ରିୟସ୍ଥାନଗୁଡ଼ିକ ଦେଖିଲେ । କିନ୍ତୁ ସୀତା କୌଣସିଠାରେ ହେଲେ ନଥିଲେ ।

ରାମ ଦୁଃଖରେ ନିଜର ସତ୍ତା ହରାଇ ବସିଲେ । "ମୁଁ କିପରି ଭାବରେ ଅଯୋଧ୍ୟାକୁ ଫେରିବି ?" କାନ୍ଦି କାନ୍ଦି କହିଲେ ରାମ—"ମୁଁ ଜନକରାଜାଙ୍କୁ କିପରି ମୁହଁ ଦେଖାଇବି ?" ସେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ପ୍ରତି ଗଛ, ଝରଣା, ପାହାଡ଼କୁ ସୀତାଙ୍କ ଖବର ପଚାରିଲେ ।

ରାମଙ୍କ ଦୁଃଖ ଲକ୍ଷ୍ମଣଙ୍କ ପକ୍ଷରେ ଭାରି ଅସହ୍ୟ ହେଲା । "ହେ ରାମ, ଆପଣ ଏପରି ଭାବରେ ଶୋକ କରନ୍ତୁ ନାହିଁ । ଆପଣ ସବୁ ପୁରୁଷଙ୍କର ଆଦର୍ଶ । ଆମେ ନିଶ୍ଚୟ ସୀତାଙ୍କୁ ଖୋଜି ଉଦ୍ଧାର କରିବା ।"- ସେ କହିଲେ ।

ସେମାନଙ୍କ ନଜର ଦକ୍ଷିଣ ଆଡ଼କୁ ମୁହଁ କରି ଠିଆହୋଇଥିବା ହରିଣ ପଲଙ୍କ ଉପରେ ପଡ଼ିଲା । ଲକ୍ଷ୍ମଣ ପାଟିକରି କହିଲେ, "ହେଇ ଦେଖନ୍ତୁ, ସେମାନେ ଆମକୁ କିଛି କହିବାକୁ ଚେଷ୍ଟା କରୁଛନ୍ତି । ପ୍ରଥମେ ଉପରକୁ ଓ ତା ପରେ ଦକ୍ଷିଣ ଦିଗକୁ ଚାହୁଁଛନ୍ତି । ସୀତା ନିଶ୍ଚୟ ଦକ୍ଷିଣ ଦିଗରେ ଅଛନ୍ତି ।"

ତେଣୁ ସେମାନେ ଦକ୍ଷିଣ ଦିଗକୁ ଚାଲିବାକୁ ଆରମ୍ଭ କରି କିଛି ସମୟ ପରେ ଗୋଟିଏ ଭଙ୍ଗା ରଥ ଦେଖିଲେ, ଯାହା ନିକଟରେ କି ତାର ସାରଥୀ ଓ ଅଶ୍ୱମାନେ ମରି ପଡ଼ିଥିଲେ ।

"କିଛି ସମୟ ପୂର୍ବରୁ ଏଠାରେ ନିଶ୍ଚୟ ଯୁଦ୍ଧ ହୋଇଥିଲା", ରାମ କହିଲେ । "ଦେଖ ଏଇ ଛିଣ୍ଡି ପଡ଼ିଥିବା ଫୁଲମାଳଟି ସୀତାଙ୍କର । ହେ ଭଗବାନ ! ରାକ୍ଷସମାନେ ତାଙ୍କୁ ନିଶ୍ଚୟ ଗିଳିଦେଇଛନ୍ତି ।"

ସେମାନେ ଗୃଧରାଜଙ୍କୁ ଗୃଧ୍ର ପକ୍ଷୀ କଟାଯାଇଥିବା ଜଟାୟୁଙ୍କୁ ଆହତ ଅବସ୍ଥାରେ ଭୂମି ଉପରେ ପଡ଼ିଥିବାର ଦେଖିଲେ । ରାମ ଜଟାୟୁ ନିକଟକୁ ଦୌଡ଼ିଗଲେ; କିନ୍ତୁ ସେ ସେତେବେଳକୁ ମୁମୂର୍ଷୁ ଅବସ୍ଥାରେ ଥାଏ ।

"ଏପରି କିଏ କରିଛି ?" ଲକ୍ଷ୍ମଣ ପଚାରିଲେ ।



ଖୁବ୍ କଷ୍ଟରେ ଜଟାୟୁ ଉତ୍ତର ଦେଲା, "ମୁଁ ରାକ୍ଷସରାଜା ରାବଣ ସହିତ ଯୁଦ୍ଧ କରିଥିଲି । ସେ ଆପଣଙ୍କ ପତ୍ନୀଙ୍କୁ ଦକ୍ଷିଣ ଆଡ଼କୁ ନେଇଯାଇଛି ।" ତାପରେ ପୁଣି ଦୁର୍ବଳ ସ୍ୱରରେ କହିଲା, "ମୁଁ ଯେ ମୃତ୍ୟୁ ପୂର୍ବରୁ ଆପଣଙ୍କର ଦର୍ଶନ ପାଇଲି ସେଥିପାଇଁ ମୁଁ ଖୁବ୍ ଆନନ୍ଦିତ । ଏହା କହି ସାହସୀ ଜଟାୟୁ ପ୍ରାଣ ତ୍ୟାଗ କଲା ।

ଦୁଇଭାଇ ଅତି ଦୁଃଖର ମନରେ ଜଟାୟୁର ଶେଷକ୍ରିୟା ସମାପନ କଲେ । "ମୁଁ ପ୍ରକୃତରେ ବଡ଼ ହତଭାଗ୍ୟ । ମୁଁ କେବଳ ମୋ ନିଜ ଉପରେ ନୁହେଁ ମୋର ହିତାକାଙ୍କ୍ଷୀମାନଙ୍କ ଉପରକୁ ମଧ୍ୟ ଦୁର୍ଭାଗ୍ୟ ଟାଣି ଆଣୁଛି ।"—ରାମ ଦୁଃଖରେ କହିଲେ ।

ଲକ୍ଷ୍ମଣ କହିଲେ, "ହେ ଭ୍ରାତା, ଏହା ବିଳାପ କରିବାର ସମୟ ନୁହେଁ । ବର୍ତ୍ତମାନ ଅନେକ କାମ କରିବାକୁ ବାକୀ ଅଛି ।"

ତେଣୁ ସେମାନେ ଦକ୍ଷିଣ ଦିଗକୁ ଯାତ୍ରା ଆରମ୍ଭ କଲେ । ରାସ୍ତାରେ ସେମାନେ ଅନେକ ବିପଦର ସମ୍ମୁଖୀନ ହୋଇଥିଲେ; କିନ୍ତୁ ସେମାନେ ସବୁ ଅତିକ୍ରମ କଲେ । କବନ୍ଧ ନାମକ ରାକ୍ଷସ ସେମାନଙ୍କୁ ଆକ୍ରମଣ କଲା । ତାର ବେକ ନ ଥାଇ ମୁଣ୍ଡ ଓ ଦେହ ଏକାଠି ମିଶି ରହିଥିଲା । ତାର ଗୋଟିଏ ଚକ୍ଷୁ, ବଡ଼ ବଡ଼ ଦାନ୍ତ ଓ ସାପପରି ଗୋଟିଏ ଜିହ୍ୱା ଥିଲା । ସେ ଶିକାରମାନଙ୍କୁ ତାର ଲମ୍ବ ବାହୁ ସାହାଯ୍ୟରେ ଜୋର୍‌ରେ ଭିଡ଼ି ଧରି ପାଟିରେ ପୂରାଉଥିଲା । ଯେତେବେଳେ ରାମ ଓ ଲକ୍ଷ୍ମଣ ତାକୁ ଶରବିଦ୍ଧ କଲେ ସେତେବେଳେ ସେମାନେ କିଏ ବୋଲି ସେ ଜାଣିବାକୁ ଚାହିଁଲା ।

"ଅଯୋଧ୍ୟାର ରାମ ଓ ତାଙ୍କର ଭାଇ ଲକ୍ଷ୍ମଣ", ସେମାନେ ଉତ୍ତର ଦେଲେ । "ରାବଣ ଚୋରାଇ ନେଇଥିବା ସୀତାଙ୍କୁ ଆମେ ଖୋଜୁଛୁ ।"

ଏହା ଶୁଣି କବନ୍ଧ କହିଲା, "ରାମଙ୍କ ଦର୍ଶନ ପାଇଥିବାରୁ ଏ ପାପୀ ଶରୀରରୁ ମୋର ଆତ୍ମା ମୁକ୍ତି ପାଇଲା । ଆପଣ ପମ୍ପା ହ୍ରଦ କୂଳରେ ଥିବା ଋଷ୍ୟମୂକ ପର୍ବତକୁ ଯାଆନ୍ତୁ । ସେଠାରେ ଆପଣ ବିତାଡ଼ିତ ମର୍କଟରାଜା ସୁଗ୍ରୀବଙ୍କୁ ଦେଖିବେ । ସେ ଆପଣଙ୍କୁ ସାହାଯ୍ୟ କରିବେ ।" ଏତିକି କହି କବନ୍ଧ ପ୍ରାଣ ତ୍ୟାଗ କଲା ।

ଋଷ୍ୟମୂକ ଯିବା ପଥରେ ସେମାନେ ମାତଙ୍ଗ ମୁନିଙ୍କ ଆଶ୍ରମ ଦେଖି ଗଲେ । ସେଠାରେ ଶବରୀ ନାମରେ ଜଣେ ଦୁର୍ବଳା ବୃଦ୍ଧା ଏକାକୀ ବାସ କରୁଥିଲା । ସେ ମାତଙ୍ଗ ମୁନିଙ୍କ ଶିଷ୍ୟା ଥିଲା ଓ ସାରା ଜୀବନ ରାମଙ୍କ ଦର୍ଶନ ପାଇଁ ଅପେକ୍ଷା କରି ରହିଥିଲା । ସେ ସେମାନଙ୍କୁ ଖାଦ୍ୟ ଓ ଆଶ୍ରୟ ଦେଇ ସେମାନଙ୍କ ଯତ୍ନ ନେଇଥିଲା । ସେମାନେ ଯେତେବେଳେ ତା ପରଦିନ ଆଶ୍ରମ ଛାଡ଼ିଲେ ଏ ପୃଥିବୀରୁ ତାର କର୍ତ୍ତବ୍ୟ ଶେଷ ହୋଇ ଯାଇଥିଲା ଓ ସେ ମଧ୍ୟ ପ୍ରାଣ ତ୍ୟାଗ କଲା ।

# ସୁଗ୍ରୀବ ଓ ରାମ

ବାଳୀ ଓ ସୁଗ୍ରୀବ କିଷ୍କିନ୍ଧ୍ୟାର ବାନରରାଜାଙ୍କର ଦୁଇପୁତ୍ର ଥିଲେ । ପିତାଙ୍କ ମୃତ୍ୟୁ ପରେ ଜ୍ୟେଷ୍ଠପୁତ୍ର ବାଳୀ ରାଜା ହେଲେ ଏବଂ ସୁଗ୍ରୀବ ବିଶ୍ୱସ୍ତ ଭାବରେ ତାଙ୍କ ସେବା କଲେ । କିନ୍ତୁ ପରେ ଦୁଇଭାଇଙ୍କ ମଧ୍ୟରେ କଳହ ହେଲା ଏବଂ ବାଳୀ ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାରୁ ବିତାଡ଼ିତ କଲେ । ପାଞ୍ଚଜଣ ଅନୁଚରଙ୍କୁ ନେଇ ସୁଗ୍ରୀବ ଋଷ୍ୟମୂକ ପର୍ବତରେ ଆଶ୍ରୟ ନେଲେ । ସେମାନେ ସେଠାରେ ବାସ କରୁଥିଲେ ମଧ୍ୟ ବାଳୀଙ୍କ ଦ୍ୱାରା ପୁଣି ଅତ୍ୟାଚାରିତ ହେବାର ଭୟ ସେମାନଙ୍କର ସର୍ବଦା ଥିଲା ।

ରାମ ଓ ଲକ୍ଷ୍ମଣ କ୍ଳାନ୍ତ ଓ ଅବସନ୍ନ ହୋଇ ପମ୍ପା ହ୍ରଦ ନିକଟରେ ପହଞ୍ଚିଲେ । ସୁଗ୍ରୀବ ଓ ତାଙ୍କର ବନ୍ଧୁମାନେ ସେମାନଙ୍କୁ ପର୍ବତର ଗଡ଼ାଣିଆ ଅଂଶରୁ ଦେଖିପାରିଲେ ।

"ହେଇ ଦେଖ", ସୁଗ୍ରୀବ ଭୟଭୀତ ହୋଇ କହିଲେ, "ମୋର ପିତାଙ୍କ ରାଜ୍ୟରୁ ମୋତେ ବିତାଡ଼ିତ କରି ମଧ୍ୟ ଶାନ୍ତ ନ ହୋଇ, ବାଳୀ ମତେ ନାଶ କରିବା ପାଇଁ ତାଙ୍କର ଗୁପ୍ତଚରମାନଙ୍କୁ ପଠାଇଛନ୍ତି ! ଚାଲ, ଆମେ ଏ ସ୍ଥାନ ଛାଡ଼ି ଚାଲିଯିବା ।"

ତାଙ୍କର ବନ୍ଧୁମାନଙ୍କ ଅଗ୍ରଣୀ ହନୁମାନ ସୁଗ୍ରୀବଙ୍କୁ କହିଲେ, "ହେ ରାଜପୁତ୍ର, ଏପରି ଭୟ କରନ୍ତୁ ନାହିଁ । ଜଣେ ଭିକାରୀବେଶରେ ସେମାନଙ୍କ ନିକଟକୁ ଯାଇ ଦେଖିଆସେ ସେମାନେ ପ୍ରକୃତରେ କିଏ । ସେମାନେ ବାଳୀଙ୍କର ପ୍ରଜାମାନଙ୍କପରି ଦିଶୁନାହାନ୍ତି ।" ତେଣୁ ହନୁମାନ ରାମ ଓ ଲକ୍ଷ୍ମଣଙ୍କ ନିକଟକୁ ଯାଇ ଭିକ୍ଷା ମାଗି କହିଲେ, "ମୋର ବିପଦ ସମୟରେ ମୋତେ ସାହାଯ୍ୟ କର ।"

ରାମ ଦୁଃଖର ସହିତ ଉତ୍ତର ଦେଲେ, "ଆମେ ନିଜେ ସାହାଯ୍ୟ ଚାହୁଁ । ତୁମେ କଣ ଋଷ୍ୟମୂକର ସୁଗ୍ରୀବଙ୍କୁ ଜାଣ ? ଆମେ ତାଙ୍କର ସାହାଯ୍ୟପ୍ରାର୍ଥୀ ।

"ଆପଣମାନେ କିଏ ?" ହନୁମାନ ପଚାରିଲେ ।

ଲକ୍ଷ୍ମଣ ଉତ୍ତର ଦେଲେ, "ଆମେ ହେଉଛୁ ରାମ ଓ ଲକ୍ଷ୍ମଣ, ଅଯୋଧ୍ୟାର ପୂର୍ବତନ ରାଜା ଦଶରଥଙ୍କର ବିତାଡ଼ିତ ପୁତ୍ରଦ୍ୱୟ । ଲଙ୍କାର ରାଜା ରାବଣ ରାମଙ୍କ ସ୍ତ୍ରୀ ସୀତାଙ୍କୁ ହରଣକରି ନେଇଯାଇଛି । ତାଙ୍କୁ ଉଦ୍ଧାର କରିବାପାଇଁ ଆମେ ସୁଗ୍ରୀବଙ୍କର ସାହାଯ୍ୟପ୍ରାର୍ଥୀ ।"

ବୁଦ୍ଧିମାନ୍ ହନୁମାନ ମନେ ମନେ ଭାବିଲେ, "ଯେଉଁମାନେ ସାହାଯ୍ୟ ଚାହାନ୍ତି ସେମାନେ ତା ବଦଳରେ ସାହାଯ୍ୟ କରିବେ ।" ସେ ସେମାନଙ୍କୁ ସୁଗ୍ରୀବଙ୍କ ନିକଟକୁ ନେଇ ପରସ୍ପରଙ୍କୁ ପରିଚୟ କରାଇଦେଲେ ।

ସୁଗ୍ରୀବ ରାମଲକ୍ଷ୍ମଣଙ୍କ ଦୁଃଖପୂର୍ଣ୍ଣ କାହାଣୀ ଶୁଣି କହିଲେ, "ମୁଁ ଭାବୁଛି ରାବଣ ସୀତାଙ୍କୁ ନେଇଯାଉଥିବା ସମୟରେ ଆମେ ଦେଖିଛୁ । ସେ ଖୁବ୍ ଛଟପଟ ହେଉଥିଲେ ଓ ହାତରେ ଧରିଥିବା ଗୋଟିଏ ପୁଟୁଳିରୁ ତାଙ୍କର ଅଳଙ୍କାରସବୁ ତଳକୁ ଫିଙ୍ଗୁଥିଲେ । ଆମେ ସେଥିରୁ କେତୋଟି ଗୋଟାଇ ରଖିଛୁ । ଆପଣ ହୁଏତ ସେଗୁଡ଼ିକ ଦେଖିଲେ ଚିହ୍ନି ପାରିବେ ।"

ସୁଗ୍ରୀବ ଆଣିଥିବା ଅଳଙ୍କାରଗୁଡ଼ିକ ଦେଖି ରାମ ଯେତେବେଳେ ଜାଣିପାରିଲେ ଯେ ତାହା ସୀତାଙ୍କର, ସେ ମନସ୍ତାପରେ କାନ୍ଦି ଉଠି କହିଲେ, "ହେ ମୋର ପ୍ରିୟ ପତ୍ନୀ ସୀତା, ତୁମେ ଯେତେବେଳେ ମୋର ସାହାଯ୍ୟ ଲୋଡ଼ୁଥିଲ ସେତେବେଳେ ତୁମକୁ ମୁଁ ରକ୍ଷା କରି ପାରିଲି ନାହିଁ !"

"ହେ ବନ୍ଧୁ, ଦୁଃଖ କର ନାହିଁ । ମୁଁ ରାବଣକୁ ମାରି ସୀତାଙ୍କୁ ତୁମ ପାଖକୁ ଫେରାଇ ଆଣିବି ।" ଏହା କହି ସୁଗ୍ରୀବ ରାମଙ୍କୁ ସାନ୍ତ୍ୱନା ଦେଲେ ।



ସୁଗ୍ରୀବ ନିଜ କଥା କହି ବାଳୀକୁ ପରାସ୍ତ କରି ସିଂହାସନ ଫେରି ପାଇବା ପାଇଁ ତାଙ୍କୁ ସାହାଯ୍ୟ କରିବାକୁ ରାମଙ୍କୁ ଅନୁରୋଧ କଲେ । ରାମ ତାଙ୍କ ସପକ୍ଷରେ ରହି ସାହାଯ୍ୟ କରିବେ ବୋଲି ସୁଗ୍ରୀବଙ୍କୁ ପ୍ରତିଶ୍ରୁତି ଦେଲେ ।

ତଥାପି ସୁଗ୍ରୀବଙ୍କ ମନରୁ ସଂଶୟ ଦୂର ହେଲା ନାହିଁ । ସେ କହିଲେ, "ବାଳୀକୁ ନାଶ କରିବା ତୁମେ ଯେତେ ସହଜ ବୋଲି ଭାବୁଛ ତାହା ପ୍ରକୃତରେ ସେତେ ସହଜ ନୁହେଁ । ସେ ଖୁବ୍ ପରାକ୍ରମଶାଳୀ ।"

ରାମ ହସି ତାଙ୍କ ଶକ୍ତିର ପ୍ରମାଣ ଦେବାକୁ ଦୁନ୍ଦୁଭି ରାକ୍ଷସର ମୃତ ଶରୀରକୁ ପଦାଘାତ କରି ଖୁବ୍ ଦୂରକୁ ଫିଙ୍ଗିଦେଲେ, ଯେଉଁଠାରେ କି ତାହା ଗୋଟିଏ ପର୍ବତ ପରି ପଡ଼ି ରହିଲା । ତା'ପରେ ସେ ତାଙ୍କର ଧନୁ ଉଠାଇ ଗୋଟିଏ ଶର ନିକ୍ଷେପ କଲେ, ଯାହା କି ଗୋଟିଏ ଧାଡ଼ିରେ ଥିବା ସାତଟି ଶାଳଗଛକୁ ଭେଦ କରି ଚାଲିଗଲା । ଶେଷରେ ସୁଗ୍ରୀବଙ୍କ ମନର ସଂଶୟ ଦୂର ହେଲା ଓ ସେମାନେ ବାଳୀକୁ ନାଶ କରିବା ପାଇଁ ଯୋଜନା କରିବାକୁ ଲାଗିଲେ ।

ରାମ କହିଲେ, "କିଷ୍କିନ୍ଧ୍ୟାରେ କିଏ ରାଜତ୍ୱ କରିବ ତାହା ସ୍ଥିର କରିବାର ଏକମାତ୍ର ଉପାୟ ହେଲା ତୁମର ଭ୍ରାତା ବାଳୀକୁ ଯୁଦ୍ଧ ପାଇଁ ଆହ୍ୱାନ କରିବା ।"



ସୁଗ୍ରୀବ ଭୟରେ ଶେଥା ପଡ଼ିଗଲେ । ସେ ଥରେଇ ଥରେଇ କହିଲେ, "ମୁଁ କିନ୍ତୁ ଭାବିଥିଲି ଆପଣ ନିଶ୍ଚୟ ଜାଣିପାରିଥିବେ ଯେ ବାଳୀ ସହ ମୋର ତୁଳନା ନାହିଁ ।"

ରାମ କହିଲେ, "ଜାଣେ । ତୁମର ଜୀବନ ଉପରେ ବିପଦ ଆସିଲେ ମୁଁ ସେଠାରେ ତୁମକୁ ସାହାଯ୍ୟ କରିବାକୁ ଉପସ୍ଥିତ ଥିବି ।"

ତେଣୁ ସେମାନେ କିଷ୍କିନ୍ଧ୍ୟା ଗଲେ । ସୁଗ୍ରୀବ ଆଗରେ ଗଲେ ଏବଂ ରାମ, ଲକ୍ଷ୍ମଣ ଓ ହନୁମାନ ନିକଟରେ ଲୁଚିରହିଲେ ।

ସାହାଯ୍ୟ କରିବା ପାଇଁ ରାମ ନିକଟରେ ଅଛନ୍ତି ଜାଣି ସୁଗ୍ରୀବ ମନ ଭିତରେ ସାହସ ପାଇଲେ । ସେ ପାଟିକରି କହିଲେ,



"ରେ ବାଳୀ, ତୋର ଯଦି ସାହସ ଅଛି ତେବେ ବାହାରକୁ ଆସି ମୋ ସହିତ ଯୁଦ୍ଧ କର । ଯେ ବେଶି ବଳୀୟାନ୍ ତାର ଜୟ ହେଉ ।"

ଏହା ଶୁଣି ବାଳୀ ବାହାରକୁ ଆସି ଚିତ୍କାର କରି କହିଲେ, "ହାରିଗଲେ ବି ପୁଣି ଫେରିବାକୁ ସାହସ କଲୁ ? ଠିକ୍ ଅଛି, ଆସ ।"

ବାଳୀ ସୁଗ୍ରୀବ ଆଡ଼କୁ ଡେଇଁପଡ଼ିଲେ ଓ ଦୁଇଭାଇଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଲାଗିଲା । କିଛି କ୍ଷଣ ପରେ ସୁସ୍ପଷ୍ଟ ହୋଇଗଲା ଯେ ତାଙ୍କ ଭିତରୁ ଜଣେ ପରାସ୍ତ ହେବାକୁ ଯାଉଛି । ଦୁର୍ଭାଗ୍ୟବଶତଃ ସେ ଦୁଇଜଣଙ୍କ ଚେହେରାରେ ଏତେ ସମାନତା ଥିଲା ଯେ ତାଙ୍କ ଭିତରୁ ସୁଗ୍ରୀବ କିଏ ରାମ ଜାଣିପାରିଲେ ନାହିଁ । ସେ ବାଳୀ ପରିବର୍ତ୍ତେ ସୁଗ୍ରୀବଙ୍କ ପ୍ରାଣ ନାଶ କରିବା ଭୟରେ ଶର ନିକ୍ଷେପ କରିବାକୁ ସାହସ କଲେ ନାହିଁ । ସୁଗ୍ରୀବ କିନ୍ତୁ ସାହସୀ ବାଳୀ ଆଗରେ କିଛି ନୁହଁନ୍ତି । ତେଣୁ ସେ ଭୟରେ ପଳାୟନ କଲେ । ବାଳୀ ଆଉ ତାଙ୍କର ଅନ୍ୱେଷଣ କଲେ ନାହିଁ ।

ତାକୁ ସାହାଯ୍ୟ ନ କରିଥିବା ହେତୁ ସୁଗ୍ରୀବ ରାମଙ୍କୁ ଭର୍ତ୍ସନା କରିବାରୁ ରାମ ଉତ୍ତର ଦେଲେ, "ତୁମ ଦୁଇଜଣଙ୍କ ଚେହେରାରେ ଏତେ ସାମଞ୍ଜସ୍ୟ ଅଛି ଯେ ଜଣକଠାରୁ ଆଉ ଜଣକୁ ଚିହ୍ନିବା କଷ୍ଟକର ।"

ଲକ୍ଷ୍ମଣ ଗୋଟିଏ ଫୁଲ ଫୁଟିଥିବା ଲତା ଆଣି ସୁଗ୍ରୀବଙ୍କ ବେକରେ ଗୁଡ଼ାଇଦେଇ କହିଲେ, "ଫେରିଯାଇ ପୁଣି ବାଳୀକୁ ଯୁଦ୍ଧ ପାଇଁ ଆହ୍ୱାନ କର । ଏଥର ଆମେ ତୁମକୁ ଚିହ୍ନିବାରେ ଅସୁବିଧା ହେବ ନାହିଁ ।"

ତେଣୁ ଅନିଚ୍ଛାସତ୍ତ୍ୱେ ସୁଗ୍ରୀବ ପୁଣି ଯାଇ ବାଲୀକୁ ଆହ୍ୱାନ କଲେ । ବାଲୀ ସୁଗ୍ରୀବର ସାହସ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ସଙ୍ଗେ ସଙ୍ଗେ ବାହାରି ଆସି ସୁଗ୍ରୀବକୁ ମାରିପାରିଥାଆନ୍ତା; କିନ୍ତୁ ରାମ ତାଙ୍କର ପ୍ରତିଜ୍ଞା ରକ୍ଷାକରି ବାଲୀକୁ ଶର ନିକ୍ଷେପ କରି ଆଘାତ କଲେ ।

ରାମ ତାଙ୍କୁ ବିରୋଧ କରୁଛନ୍ତି ଜାଣି ବାଲୀ ଖୁବ୍ ଦୁଃଖିତ ହେଲେ । ନିଜ ପୁତ୍ର ଅଙ୍ଗଦକୁ ରାମଙ୍କ ଆଶ୍ରୟରେ ଛାଡ଼ି ବାଲୀ ଅଳ୍ପ ସମୟ ପରେ ପ୍ରାଣତ୍ୟାଗ କଲେ । ରାମ ସୁଗ୍ରୀବଙ୍କୁ ସିଂହାସନରେ ବସାଇ ବାଲୀଙ୍କ ପୁତ୍ର ଅଙ୍ଗଦଙ୍କୁ ଯୁବରାଜ ବୋଲି ଘୋଷଣା କଲେ । ଏହିପରିଭାବରେ ବାଲୀସୁଗ୍ରୀବଙ୍କ ପାରିବାରିକ କଳହର ଶେଷ ହେଲା ।

ଏଣେ ବର୍ଷାଋତୁ ଆରମ୍ଭ ହୋଇଯିବାରୁ ରାମଙ୍କର ଲଙ୍କା ଅଭିଯାନ ବର୍ଷାଋତୁର ଶେଷ ପର୍ଯ୍ୟନ୍ତ ସ୍ଥଗିତ ରଖିବାକୁ ହେଲା । ରାମ ଚଉଦବର୍ଷ ବନବାସ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇଥିବାରୁ ସୁଗ୍ରୀବଙ୍କର ଅତିଥିରୂପେ କିଷ୍କିନ୍ଧ୍ୟାରେ ରହିବାକୁ ସମ୍ମତ ହେଲେ ନାହିଁ ।

ରାମ ଓ ଲକ୍ଷ୍ମଣ ବାକି କେତେ ମାସ ପ୍ରସ୍ରବଣ ପର୍ବତରେ କଟାଇଲେ । ହନୁମାନ ରାମଙ୍କର ପରମ ଭକ୍ତ ହୋଇ ରହିଲେ । ଦିନ ଯିବା ସଙ୍ଗେ ସଙ୍ଗେ ବର୍ଷାଋତୁ ଶେଷ ହୋଇ



ଆସିଲା । ସୀତାଙ୍କ ଉଦ୍ଧାର ପାଇଁ ରାମଙ୍କୁ ସାହାଯ୍ୟ କରିବାକୁ ଯେ ପ୍ରତିଜ୍ଞା କରିଥିଲେ ସେ ବିଷୟ ସୁଗ୍ରୀବ ପୂରା ପାଶୋରି ଦେଇଥିବା ପରି ମନେହେଲା । ସେ ତାଙ୍କ ରାଜକାର୍ଯ୍ୟ କର୍ତ୍ତବ୍ୟ ଓ ଆନନ୍ଦରେ ଅତିଶୟ ବ୍ୟସ୍ତ ରହିଲେ । ରାମ ଖୁବ୍ ବ୍ୟଗ୍ର ଓ ବ୍ୟଥିତ ହୋଇପଡ଼ିଲେ ।

ତନେ ହନୁମାନ ସୁଗ୍ରୀବଙ୍କ ନିକଟକୁ ଯାଇ କହିଲେ, "ସୀତାଙ୍କୁ ଉଦ୍ଧାର କରି ଆଣିବା ପାଇଁ ତୁମେ କଣ ରାମଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ହୋଇନଥିଲ ? ତାହେଲେ ତୁମର ସୈନ୍ୟ କାହାନ୍ତି ?"

ସୈନ୍ୟମାନଙ୍କୁ ଉପସ୍ଥିତ ହେବା ପାଇଁ ଆଦେଶ ଦିଆହେଲା । ବର୍ଷା ଶେଷ ହୋଇ-ଯାଇଥିଲା ଏବଂ ଆକାଶରେ ମେଘର ଆଉ ଚିହ୍ନ ନଥିଲା; କିନ୍ତୁ ସୁଗ୍ରୀବ ଆନନ୍ଦ ଉପଭୋଗ କରିବାରେ ବିଭୋର ଥିଲେ । ଶେଷରେ ରାମଙ୍କର ଧୈର୍ଯ୍ୟ ସୀମା ଅତିକ୍ରମ କରି ଯାଇଥିଲା । ଲକ୍ଷ୍ମଣ ସୁଗ୍ରୀବଙ୍କ ନିକଟକୁ ଯାଇ ତାଙ୍କୁ ଭୋଜ-ଉତ୍ସବରେ ବ୍ୟସ୍ତ ଥିବାର ଦେଖିଲେ ।

"ତୁମେ କ'ଣ ତୁମର ପ୍ରତିଜ୍ଞା ରକ୍ଷା କରିବ ନା ବାଲୀ ପରି ତୁମେ ମଧ୍ୟ ରାମଙ୍କ ବାଣରେ ପ୍ରାଣ ତ୍ୟାଗ କରିବାକୁ ଚାହିଁ ?" ରୁଷ୍ଟ ହୋଇ ପଚାରିଲେ ଲକ୍ଷ୍ମଣ ।

ସୁଗ୍ରୀବ ଏହା ଶୁଣି ଭୟ ପାଇଲେ । ସେ ଲକ୍ଷ୍ମଣଙ୍କୁ କ୍ଷମା ମାଗି ଓ ଆଶ୍ୱାସନା ଦେଇ କହିଲେ ଯେ ସେ ସୈନ୍ୟ ସଜ କରିବାକୁ ଆଦେଶ ଦେଇଛନ୍ତି ଓ ସେ ନିଜେ ମଧ୍ୟ ପ୍ରସ୍ତୁତ ହେଉଛନ୍ତି । ସୈନ୍ୟମାନେ ଉପସ୍ଥିତ ହେବାରୁ ସୁଗ୍ରୀବ ସେମାନଙ୍କ ସହ ରାମଙ୍କ ନିକଟକୁ ଗଲେ । ରାମ କହିଲେ, ସୀତା କେଉଁଠାରେ ଅଛନ୍ତି ତାହା ଜାଣିବା ପାଇଁ ତୁମର ସର୍ବାଧିକ ବିଶ୍ୱସ୍ତ ଭୃତ୍ୟମାନଙ୍କୁ "ପ୍ରଥମେ ପଠାଅ । ତାପରେ ସୈନ୍ୟମାନେ ତାଙ୍କୁ ଅନୁଗମନ କରି ଯିବେ ।"

ସୁଗ୍ରୀବ ତାଙ୍କର ଅନୁଚରମାନଙ୍କ ମଧ୍ୟରୁ କେତେ ଜଣଙ୍କୁ ଅଙ୍ଗଦ ଓ ହନୁମାନଙ୍କର ଆଦେଶ ଅନୁସାରେ କାର୍ଯ୍ୟ କରିବାକୁ କହିଲେ । ହନୁମାନ ସବୁଠାରୁ ଶ୍ରେଷ୍ଠ ଓ ବିଶ୍ୱସ୍ତ ହୋଇଥିବାରୁ ରାମ ତାଙ୍କୁ ଡାକି କହିଲେ, "ତୁମେ ଯେତେବେଳେ ସୀତାଙ୍କୁ ଦେଖିବ ତାଙ୍କୁ ମୋର ଏ ନାମାଙ୍କିତ ମୁଦ୍ରିକା ଦେଖାଇବ; ନଚେତ୍ ସେ ତୁମକୁ ଅବିଶ୍ୱାସ କରିପାରନ୍ତି ।"

# ହନୁମାନର ଲଙ୍କାଯାତ୍ରା

ହନୁମାନ ଓ ଅଙ୍ଗଦ ତାଙ୍କର ଅନ୍ୟ କେତେକ ଅନୁଚରଙ୍କ ସହ କିଷ୍କିନ୍ଧ୍ୟା ଛାଡ଼ି ଦକ୍ଷିଣ ଦିଗକୁ ଯାତ୍ରା ଆରମ୍ଭ କଲେ। ଗଲାବେଳେ ସେମାନେ ବାଟରେ ସବୁ ସ୍ଥାନରେ ଖୋଜି ଓ ସୀତାଙ୍କ ଖବର ସଂଗ୍ରହ କରି କରି ଗଲେ। ଶେଷରେ ସେମାନେ ଦେଶର ସବୁଠାରୁ ଦକ୍ଷିଣ ପ୍ରାନ୍ତରେ ପହଞ୍ଚିଲେ। ତାଙ୍କ ସମ୍ମୁଖରେ ଭୟଙ୍କର ସମୁଦ୍ର ବିସ୍ତାରିତ ହୋଇ ରହିଥିଲା, ଯାହାର ଅପରପ୍ରାନ୍ତରେ ଲଙ୍କାଦ୍ୱୀପ ଥିଲା।

ସେମାନେ କ୍ଳାନ୍ତ ଓ ନିରାଶ ହୋଇପଡ଼ିଥିଲେ ମଧ୍ୟ ଅଙ୍ଗଦ କହିଲେ, "ମୁଁ ସୀତାଙ୍କର ଖବର ନ ନେଇ କେବେହେଲେ ଫେରିବି ନାହିଁ। ତା ଅପେକ୍ଷା ଏଠାରେ ବସି କ୍ଷୁଧାରେ ମୃତ୍ୟୁ ବରଣ କରିବା ଶ୍ରେୟସ୍କର ହେବ। ଜଟାୟୁ ପରି ଆମେ ମଧ୍ୟ ରାମଙ୍କ ସେବାରେ ଜୀବନ ଦେବୁ। ତାଛଡ଼ା ସୀତାଙ୍କ ସମ୍ବାଦ ନ ନେଇ ଫେରିଲେ ମୋର କକା ସୁଗ୍ରୀବ ଆମକୁ ଜୀବନରେ ମାରିଦେବେ।"



ହଠାତ୍ ସେମାନଙ୍କ ପଛପଟେ ଥିବା ପାହାଡ଼ ଉପରେ ତାର ବସିବା ସ୍ଥାନରୁ ଜଟାୟୁର ଭାଇ ସମ୍ପାତି ବାନରମାନଙ୍କ କଥୋପକଥନ ଶୁଣିବାକୁ ପାଇ ସଙ୍ଗେ ସଙ୍ଗେ ତଳକୁ ଉଡ଼ି ଆସିଲା। "ଆପଣ କିଏ ?" ସେ ପଚାରିଲା। "ଜଟାୟୁର ମୃତ୍ୟୁ ବିଷୟରେ ଆପଣ କ'ଣ ଜାଣନ୍ତି ? ମୁଁ ତାର ଭାଇ।"

ସମ୍ପାତି ନିକଟରେ ତାଙ୍କର ଦୁଃଖପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ସେମାନେ କିପରି ସୀତାଙ୍କ ଅନ୍ୱେଷଣରେ ଆସି ଏପର୍ଯ୍ୟନ୍ତ ଅକୃତକାର୍ଯ୍ୟ ହୋଇଛନ୍ତି ସବୁ ବିଷୟ ବାନରମାନେ କହିଲେ।

ସମ୍ପାତି ତାପରେ କହିଲା, "ମୁଁ କିନ୍ତୁ ଜାଣେ ସେ କେଉଁଠାରେ ଅଛନ୍ତି। ରାବଣ

ତାଙ୍କୁ ସମୁଦ୍ର ଉପର ଦେଇ ଲଙ୍କାକୁ ନେଇଯାଇଥିବାର ମୁଁ ଦେଖିଛି । ଆପଣ ତାଙ୍କୁ ସେଇଠାରେ ପାଇବେ ।" ଅଙ୍ଗଦ, ହନୁମାନ ଓ ଅନ୍ୟମାନେ ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କଲେ । "ଆପଣମାନଙ୍କୁ କେବଳ ସମୁଦ୍ର ପାରହେବାକୁ ପଡ଼ିବ ।" ସମ୍ପାତି କହିଲା । ସେମାନେ ସମସ୍ତେ ଖୁସି ହୋଇପଡ଼ିଲେ । ସମୁଦ୍ର ପାରହେବାକୁ ପଡ଼ିବ; କିନ୍ତୁ କେମିତି ? କିଏ ବା ତାହା କରିବାକୁ ଯିବ ?

ସେମାନଙ୍କର ବୃଦ୍ଧ ଉପଦେଷ୍ଟା ଜାମ୍ବବାନ କହିଲେ, "ହନୁମାନ ଯିବା ଉଚିତ । ସେ କେବଳ ସମୁଦ୍ରକୁ ଡେଇଁ ପାରହୋଇପାରିବ ।"

ହନୁମାନ ଠିଆହୋଇପଡ଼ି ଚାରିଆଡ଼କୁ ଚାହିଁଲା । ତାର ଗୋଟିଏ ସ୍ଥାନ ଦରକାର ଯେଉଁଠାରୁ କି ସେ ଡେଇଁପାରିବ । ପକ୍ଷୀମାନେ ବାସ କରୁଥିବା ମହେନ୍ଦ୍ର ପର୍ବତର ଗଡ଼ାଣିଆ ଅଂଶରେ ପତ୍ରପୁଷ୍ପ ଭରା ଗଛସବୁ ଥିଲା ।

ହନୁମାନ ଶୀଘ୍ର ପର୍ବତର ଶୀର୍ଷଦେଶକୁ ଚଢ଼ିଗଲା । ଏହିପରି ଗୋଟିଏ ପଥୁରିଆ ଶୃଙ୍ଗ ତାର ଦରକାର ଥିଲା । ସେ ନିଜକୁ ପୂର୍ଣ୍ଣରୂପରେ ବିସ୍ତାର କରି ତାର ବଡ଼ ବଡ଼ ପାଦକୁ ପାହାଡ଼ର ଶକ୍ତ ଭୂମି ଉପରେ ଭଲଭାବେ ରଖିଲା; ଏବଂ ତାର ବଳଶାଳୀ ହାତ ଦୁଇଟିକୁ ଦୁଇପାଖରେ ଚପିଧରି ନିଜର ସାମର୍ଥ୍ୟ ଆହୁରି ବଢ଼ାଇଲା । ତାର ସମସ୍ତ ଶକ୍ତି ଏକତ୍ର କରି ସେ ଏତେ ଜୋରରେ ଡେଇଁଲା ଯେ ପୂର୍ବାପର ସମୁଦ୍ର ଉପର ଦେଇ ଆକାଶରେ ପହଞ୍ଚିଲା ପରି ଜଣାଗଲା ।

ହନୁମାନର ଲମ୍ଫ ଯୋଗୁଁ ମହେନ୍ଦ୍ର ପର୍ବତ ଥରିଉଠିଲା । ତାର ଗଡ଼ାଣିଆ ଅଂଶର ଫାଙ୍କ ଦେଇ ତା ଭିତରୁ ପାଣିର ଧାର ବାହାରିଲା ଗଡ଼ିଆସିଲା । ଗଛମାନ ଉପୁଡ଼ିଗଲା, ପକ୍ଷୀମାନେ ଗଛ ଛାଡ଼ି ଉଡ଼ିଗଲେ ଓ ପଶୁଗଣ ଭୟରେ ଇତଃସ୍ତତ ହେବାକୁ ଲାଗିଲେ ।

ଶେଷରେ ହନୁମାନ ଲଙ୍କାଦ୍ୱୀପରେ ଯାଇ ପହଞ୍ଚିଲା । କିଛି ଦୂରରେ ଗହିରିଆ ଖାଇ ଓ ଶତ ଶତ ପ୍ରହରୀଙ୍କଦ୍ୱାରା ପରିବେଷ୍ଟିତ ରାବଣର ରାଜଧାନୀ ସ୍ୱର୍ଣ୍ଣଲଙ୍କା ଦୃଷ୍ଟିଗୋଚର ହେଲା । ରାତି ହୋଇ ଲୋକମାନେ ଘର ଭିତରକୁ ଯିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହନୁମାନ ସ୍ଥିର କଲା । ଅନ୍ଧକାର ହୋଇଯିବାରୁ ସେ ପ୍ରାଚୀର ଅତିକ୍ରମ କରି, ରାକ୍ଷସୀମାନଙ୍କର ଚକ୍ଷୁ ଏଡ଼େଇବା ପାଇଁ ନଇଁପଡ଼ି ଅତି ସନ୍ତର୍ପଣରେ ଗୁରୁଣ୍ଡି ଗୁରୁଣ୍ଡି ଆଗେଇ ଚାଲିଲା ।

ତା ଚକ୍ଷୁ ସାମନାରେ ବିଖ୍ୟାତ ସହର ଲଙ୍କା ଦେଖାଯାଉଥାଏ । ହନୁମାନ କେବେ ହେଲେ ଏପରି ବୈଭବଶାଳୀ ଓ ସମୃଦ୍ଧିମନ୍ତ ରାଜ୍ୟ ଦେଖିନଥିଲା । ଦୁଇପାଖରେ ସୁନ୍ଦର

ସୁନ୍ଦର ପ୍ରାସାଦ ଆଉ ଚଉଡ଼ା ରାସ୍ତା ଯାଇଥିଲା । ସେ ସଙ୍ଗୀତ ଓ ନୃତ୍ୟରତ ସ୍ତ୍ରୀଲୋକମାନଙ୍କର ନୂପୁର ରୁଣୁଝୁଣୁ ଶବ୍ଦ ଶୁଣିବାକୁ ପାଉଥିଲା । ବାୟୁମଣ୍ଡଳ ମଧ୍ୟ ସୁଗନ୍ଧଯୁକ୍ତ ହୋଇ ରହିଥିଲା ।

ରାବଣର ପ୍ରାସାଦ ଅସ୍ତ୍ରଧାରୀ ରାକ୍ଷସମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସହରର ମଧ୍ୟସ୍ଥଳରେ ଥିଲା । ନିଜ ଶରୀରର ଆକାର ଏକ ବିରାଡ଼ିଠାରୁ ଛୋଟ କରି ହନୁମାନ ସମସ୍ତଙ୍କ ଅଗୋଚରରେ ଭିତରକୁ ପଶି ସେହି ଆଡ଼ମ୍ବରପୂର୍ଣ୍ଣ ପ୍ରାସାଦର କୋଠରି ପରେ କୋଠରି ଅତିକ୍ରମ କରିବାକୁ ଲାଗିଲା । ତାର ସ୍ୱପ୍ନରେ ମଧ୍ୟ ସେ କେବେହେଲେ ଏପରି ଧନସମ୍ପତ୍ତିର ପ୍ରଦର୍ଶନୀ ଦେଖି ନ ଥିଲା । ପୁରୁଷ ଓ ନାରୀମାନେ ସୁନ୍ଦର ରେଶମ ବସ୍ତ୍ର ଓ ଦାମୀ ଅଳଙ୍କାର ପିନ୍ଧି ନିଦ୍ରାଯାଉଥିଲେ । ହନୁମାନ ଅନ୍ତଃପୁରକୁ ଯାଇ ନିଦ୍ରିତା ସ୍ତ୍ରୀଲୋକମାନଙ୍କ ମୁହଁକୁ ଚାହିଁ ସେଠାରେ ସୀତାଙ୍କୁ ଦେଖିଲା ନାହିଁ । ଏପରିକି ରାବଣର ନିଜ କୋଠରିକୁ ଯାଇ ସେଠାରେ ରାବଣ ଓ ତାର ସ୍ତ୍ରୀ ମନ୍ଦୋଦରୀକୁ ସ୍ୱର୍ଣ୍ଣହୀରକଖଚିତ ଦାମୀ ଆସବାବପତ୍ରଦ୍ୱାରା ପରିବେଷ୍ଟିତ ହୋଇ ନିଦ୍ରାଯାଉଥିବାର ଦେଖିଲା; କିନ୍ତୁ ସେଠାରେ ମଧ୍ୟ ସୀତାଙ୍କର ଚିହ୍ନବର୍ଣ୍ଣ ନ ଥିଲା ।

"ଏଠାରେ ନିଶ୍ଚୟ ଏପରି ସ୍ଥାନ ଅଛି ଯେଉଁଠାରେ କି ତାଙ୍କୁ ଲୁଚାଇ ରଖାଯାଇ-ପାରେ" — ମନେ ମନେ ଭାବିଲା ହନୁମାନ ।

ପ୍ରାସାଦ ପ୍ରାଚୀରର ସୀମା ବାହାରେ କିଛି ଦୂରରେ 'ଅଶୋକବନ' ନାମରେ ରାବଣର ଗୋଟିଏ ଉପବନ ଥିଲା । ହନୁମାନ ଲମ୍ଫଦ୍ୱାରା ପ୍ରାଚୀର ଅତିକ୍ରମ କରି ନିଜକୁ ଗୋଟିଏ ସୁନ୍ଦର ବଗିଚା ମଧ୍ୟରେ ପ୍ରବେଶ କଲା । ତାର ମନେହେଲା ସୀତା ଏହାରି ଭିତରେ କେଉଁଠି ନିଶ୍ଚୟ ଅଛନ୍ତି ।

ଗୋଟିଏ ଝାଙ୍କାଳିଆ ଗଛରେ ସେ ଚଢ଼ିଗଲା ଯେପରିକି ଆଉ କେହି ତାକୁ ଦେଖି ପାରିବେ ନାହିଁ; କିନ୍ତୁ ସେ ଚାରିଆଡ଼କୁ ଦେଖି ପାରିବ । ଚନ୍ଦ୍ର ଉଠି ସାରିଥିଲା । ତାର କିରଣରେ ସେ ଦେଖିଲା ଯେ ଜଣେ ଅତି ସୁନ୍ଦରୀ ସ୍ତ୍ରୀ ଭୂମି ଉପରେ ବସିଛନ୍ତି । ତାଙ୍କର ପରିଧାନ ବସ୍ତ୍ର ଲୋଚାକୋଚା ହୋଇଛି, ମୁହଁଟି ଶୁଖିଲା ଓ ପତଳା ଦିଶୁଛି । ରାକ୍ଷସୀମାନେ ତାଙ୍କ ଚାରିପଟେ ଜଗି ରହିଛନ୍ତି ।

ଏ ହେଉଛନ୍ତି ସୀତା, ହନୁମାନ ମନେ ମନେ ଭାବିଲା । "ବର୍ତ୍ତମାନ ମୁଁ ଫେରିଯାଇ-ପାରେ । କିନ୍ତୁ ଏପରି କୁରୂପା ରାକ୍ଷସୀମାନେ ତାଙ୍କ ପାଖରେ ଥିବା ଅବସ୍ଥାରେ ମୁଁ କିପରି

ତାଙ୍କ ସହ କଥାବାର୍ତ୍ତା କରିବ ? ଯଦି ତାଙ୍କ ସହ କଥାବାର୍ତ୍ତା ନ କରେ ତେବେ ରାମଙ୍କୁ କ'ଣ କହିବ ? ତାଙ୍କୁ ମୁଁ କ'ଣ କହିଲି ଓ ସେ ମୁଦି ଦେଖି କ'ଣ କହିଲେ, ତାହା ନିଶ୍ଚୟ ରାମ ମୋତେ ପଚାରିବେ । ଯଦି ସୀତାଙ୍କର କୌଣସି ଚିହ୍ନ ନ ନେଇ ଫେରେ ତେବେ ମୋ କଥାକୁ କେହି କଣ ବିଶ୍ୱାସ କରିବେ ?"

ସେତିକବେଳେ ମଶାଲ ଜଳାଇ ରାବଣ ଶୋଭାଯାତ୍ରାରେ ସେଠାକୁ ଆସୁଥିବାର ହନୁମାନ ଦେଖିପାରିଲ । ରାବଣ ସୀତାଙ୍କ ନିକଟକୁ ଆସି କହିଲା, "ହେ ସୀତା, ତୁମେ ମୋର ରାଣୀ ହୋଇ ରୁହ । ରାମ କେବେହେଲେ ତୁମକୁ ନେବା ପାଇଁ ଆସିବ ନାହିଁ ।" ସୀତା ଅବଜ୍ଞାରେ ରାବଣ ଆଡକୁ ପଛକରି ବସିବାରୁ ସେ ରାଗରେ ଚିତ୍କାର କରି କହିଲା, "ମୁଁ ତୁମକୁ ଯେଉଁ ବର୍ଷେ ସମୟ ଦେଇଥିଲି ସେଥିରୁ ଆଉ ମୋଟେ ଦୁଇମାସ ବାକି ଅଛି ।" ତାପରେ ମୁଁ ତୁମକୁ ବଳପୂର୍ବକ ମୋର ପ୍ରାସାଦକୁ ନେଇଯିବି ଓ ମୋର ରାନ୍ଧୁଣିଆ ତୁମକୁ ଖଣ୍ଡ ଖଣ୍ଡ କରି କାଟି ମୋର ପ୍ରାତଃଭୋଜନ ପାଇଁ ରାନ୍ଧିବ ।"

ରାବଣ ଚାଲିଯିବା ପରେ ରାକ୍ଷସୀମାନେ ପୁଣି ସୀତାଙ୍କ ଚାରିପଟେ ଜଗିବସି ତାଙ୍କର ମନ ପରିବର୍ତ୍ତନ ପାଇଁ ତାଙ୍କୁ ପ୍ରାଣପଣ ପ୍ରବର୍ତ୍ତାଇଲେ । "ତୁମେ କି ନିର୍ବୋଧ ! ତୁମର ରାମ ଜଣେ ଭିକ୍ଷୁକ । ସେ କିପରି ଲଙ୍କାକୁ ଆସିପାରିବ ? ରାଜାଧିରାଜ ରାବଣ ଯେ ତୁମକୁ ନିଜର ସ୍ତ୍ରୀଭାବରେ ଗ୍ରହଣ କରୁଛନ୍ତି ସେଥିପାଇଁ ତୁମର ନିଜକୁ ଭାଗ୍ୟବାନ୍ ମନେ କରିବା ଉଚିତ । ତାଙ୍କୁ ପ୍ରତ୍ୟାଖ୍ୟାନ କରିବା ପାଇଁ ତୁମେ କିପରି ସାହସ କରୁଛ ?"

ସୀତା କିନ୍ତୁ କ୍ରୋଧରେ ବୁକଫାଟି କହିଲେ, "ମୁଁ କେବେହେଲେ ମୋର ମତ ପରିବର୍ତ୍ତନ କରିବି ନାହିଁ । ତୁମର ଯାହା ଇଚ୍ଛା କରିପାର ।"

ଶେଷରେ ସମସ୍ତେ ଚାଲିଗଲା ପରେ ସୀତା ଏକାକୀ ବସି ରୋଦନ କରିବାକୁ ଲାଗିଲେ । ଏହାହିଁ ତଳକୁ ଆସି ତାଙ୍କ ସହ କଥାବାର୍ତ୍ତା କରିବାର ଉପଯୁକ୍ତ ସମୟ ବୋଲି ହନୁମାନ ଭାବିଲା । କିନ୍ତୁ ସୀତା ତାଙ୍କୁ କେବେ ଦେଖି ନ ଥିବାରୁ ଭୟ ପାଇପାରନ୍ତି ବୋଲି ଭାବି ସେ ଗଛ ଉପରେ ବସି ଧୀର ସ୍ୱରରେ ରାମଙ୍କର ଗୁଣ ଗାନ କରିବାକୁ ଲାଗିଲା ।

ସୀତା ଆଶ୍ଚର୍ଯ୍ୟ ହୋଇ ଉପରକୁ ଚାହିଁଲେ । "ତୁମେ କିଏ" -- ଧୀର ସ୍ୱରରେ ପଚାରିଲେ ସେ ।

ହନୁମାନ ତଳକୁ ଆସି ସୀତାଙ୍କ ପାଦ ଛୁଇଁ ତାଙ୍କୁ ରାମଙ୍କ ମୁଦି ଦେଖାଇ କହିଲେ, "ହେ ମାତା, ଆପଣ ନିଜକୁ ପ୍ରବୋଧ ଦିଅନ୍ତୁ । ରାମ ଖୁବ୍ ଶୀଘ୍ର ଆପଣଙ୍କୁ ଉଦ୍ଧାର କରିବାକୁ ଆସୁଛନ୍ତି । ମୁଁ ତାଙ୍କର ଭୃତ୍ୟ ଓ ଆପଣଙ୍କର ସମ୍ବାଦ ନେବା ପାଇଁ ଆସିଛି ।"

ସୀତା ତାଙ୍କର ପ୍ରିୟ ରାମଙ୍କ ବିଷୟରେ ଶତ ଶତ ପ୍ରଶ୍ନ ପଚାରିଲେ; କିନ୍ତୁ ହନୁମାନଙ୍କ ପିଠିରେ ବସି ସମୁଦ୍ର ପାରହେବାକୁ ରାଜି ହେଲେ ନାହିଁ । ସୀତା କହିଲେ, "ହେ ପୁତ୍ର, ତୁମେ ଯଦି ଧରାପଡ଼, ତେବେ ମୋର ସମ୍ବାଦ ମୋର ସ୍ୱାମୀଙ୍କୁ ଦେବାକୁ କେହି ନ ଥିବେ । ମୋର ମଥାର ଏ ଅଳଙ୍କାର ତାଙ୍କୁ ଦେଇ କହିବ ଯେ ଯଦି ମାସକ ମଧ୍ୟରେ ନ ଆସନ୍ତି, ତେବେ ମୁଁ ମୃତ୍ୟୁ ବରଣ କରିବି ।"

"ହେ ମାତା, ଦୁଃଖ କର ନାହିଁ । ସେ ନିଶ୍ଚୟ ଆସିବେ ।" ଏହା କହି ହନୁମାନ ଯେଉଁ ବାଟେ ଆସିଥିଲେ ସେ ବାଟେ ଫେରିଗଲେ ।

ଏହି ସମୟରେ ଅଙ୍ଗଦ, ଜାମ୍ବବାନ ଓ ଅନ୍ୟ ବାନରମାନେ ସମୁଦ୍ରର ଆରପଟେ ରହି ଭୟ ଓ ବ୍ୟଗ୍ରତା ସହ ଆକାଶକୁ ଚାହିଁ ରହିଥାନ୍ତି ।

ହନୁମାନ ସମୁଦ୍ରର ଢେଉ ଉପରେ ଉପରେ ବାୟୁମଣ୍ଡଳ ମଧ୍ୟରେ ଆସି କହିଲା, "ମୁଁ ସୀତାଙ୍କ ସହ କଥାବାର୍ତ୍ତା କରି ଆସିଲି ! ଆମର ଆଉ ସମୟ ନଷ୍ଟ କରିବା ଉଚିତ ନୁହେଁ । ଚାଲ ଖୁବ୍ ଶୀଘ୍ର ଆମେ ରାମଙ୍କ ନିକଟକୁ ଫେରିଯିବା ।"

ତେଣୁ ସେମାନେ ସଙ୍ଗେ ସଙ୍ଗେ ଫେରିଲେ । ସେମାନେ ନଦୀ, ଝରଣା ପାର ହୋଇ, ପାହାଡ଼ ଚଢ଼ି ଏବଂ ରାସ୍ତା ବନ୍ଦ କରୁଥିବା ଗଛଡ଼ାଳ ସବୁକୁ ଭାଙ୍ଗି ଆଗେଇ ଚାଲିଲେ । ଶେଷରେ ସେମାନେ କିଷ୍କିନ୍ଧ୍ୟାରେ ପହଞ୍ଚିଲେ । ହନୁମାନଠାରୁ ଖବର ଶୁଣିବାପାଇଁ ରାମ ଓ ଲକ୍ଷ୍ମଣଙ୍କର ଅପେକ୍ଷା କରିବାକୁ ଆଉ ଧୈର୍ଯ୍ୟ ନ ଥିଲା ।



ହନୁମାନ ରାମଙ୍କ ପାଦତଳେ ବସି ସୀତା ଦେଇଥିବା ଅଳଙ୍କାର ତାଙ୍କୁ ଦେଇ କହିଲେ "ହେ ପ୍ରଭୁ, ମୁଁ ତାଙ୍କୁ ଦେଖା କରି, ତାଙ୍କ ସହିତ କଥାବାର୍ତ୍ତା କରି ଆସିଛି । ସେ ଭଲ ଅଛନ୍ତି; କିନ୍ତୁ ଖୁବ୍ ଦୁଃଖରେ ଅଛନ୍ତି । ରାକ୍ଷସୀମାନଙ୍କ ଦ୍ୱାରା ପରିବେଷ୍ଟିତ ଓ ଅପମାନିତ ହୋଇ ଅଶୋକ ବନରେ ରହିଛନ୍ତି । ତାଙ୍କୁ ମାସକ ମଧ୍ୟରେ ଉଦ୍ଧାର



ନ କଲେ ରାବଣ ତାଙ୍କର ପ୍ରାଣ ନାଶ କରିବ ।"

ଦୁଃଖରେ ରାମଙ୍କର କଣ୍ଠରୁଦ୍ଧ ହୋଇ ଆସିଲା । ସେ ହନୁମାନଙ୍କୁ ଆଲିଙ୍ଗନ କରି କହିଲେ, "ହେ ମୋର ବୀର ବନ୍ଧୁ, ତୁମ ଉପକାରର ପ୍ରତିଦାନ ଦେବାକୁ ମୋ ପାଖରେ କିଛି ନାହିଁ ।"

ଗୋଟାଏ ମୁହୂର୍ତ୍ତ ନଷ୍ଟ କରିବା ପାଇଁ ଆଉ ସମୟ ନ ଥିଲା । ସୁଗ୍ରୀବଙ୍କ ସୈନ୍ୟମାନେ ପ୍ରସ୍ତୁତ ହୋଇ ରହିଥିଲେ ଏବଂ ରାମଙ୍କ କଥା ଅନୁଯାୟୀ ସେ ସେମାନଙ୍କୁ ଆଗେଇବାକୁ ଆଦେଶ ଦେଲେ । ଅଳ୍ପ ସମୟ ମଧ୍ୟରେ ସେମାନେ ସମୁଦ୍ରକୂଳରେ ପହଞ୍ଚି ବାଲି ଉପରେ ତମ୍ବୁ ପକାଇ ବିଶ୍ରାମ ନେଲେ । ରାବଣର ଜଗୁଆଳିମାନେ ଉଚ୍ଚ ପର୍ବତ ଉପରୁ ସେମାନଙ୍କର ତମ୍ବୁ ଦେଖି ରାବଣକୁ ରାମଙ୍କର ସୈନ୍ୟ ପହଞ୍ଚିଯାଇଥିବା ସମ୍ବାଦ ଦେଲେ । ରାବଣ ତାର ମନ୍ତ୍ରୀ, ଉପଦେଷ୍ଟା ଓ ସେନାପତିମାନଙ୍କୁ ଡକାଇ କଣ କରାଯିବ ତାହା ବିଚାର କରିବାକୁ ଲାଗିଲା । ରାକ୍ଷସମାନେ ସେମାନଙ୍କ ଶକ୍ତି ବିଷୟରେ ନିଃସନ୍ଦେହ ଥିଲେ ଓ ଶତ୍ରୁକୁ ନାଶ କରିପାରିବେ ବୋଲି ନିଶ୍ଚିତ ଥିଲେ । "ଆପଣଙ୍କ ବିରୁଦ୍ଧରେ ରାମ କ'ଣ କରିପାରେ ? ସେ ଗୋଟାଏ ଭିକ୍ଷୁକ ଯେ କି ଅନ୍ୟର ବାନରସେନା ଆଣି ଯୁଦ୍ଧ କରିବାକୁ ଆସିଛି । ଆମେ ସେମାନଙ୍କୁ ପଲକ ମଧ୍ୟରେ ଧ୍ୱଂସ କରିଦେବୁ ।" ସେମାନେ କହିଲେ ।



କିନ୍ତୁ ରାବଣର ସାନଭାଇ ବିଭୀଷଣ କହିଲା, "ହେ ରାବଣ, ଏ ବିଷୟ ଏତେ ସହଜ ଭାବରେ ନିଅନ୍ତୁ ନାହିଁ । ତୁମେ ରାମଙ୍କ ପ୍ରତି ଖୁବ୍ ଅନ୍ୟାୟ କରିଛ । ସୀତାଙ୍କୁ ଫେରାଇ ନଦେଲେ ତୁମେ ଓ ତୁମର ରାଜ୍ୟ ଧ୍ୱଂସମୁଖରେ ପଡ଼ିବ ।" ରାବଣ ଏହା ଶୁଣି ଏତେ ବିରକ୍ତ ହେଲା ଯେ ବିଭୀଷଣ ଭାବିଲା ଲଙ୍କା ଛାଡ଼ି ଚାଲିଯିବା ତା ପକ୍ଷରେ ନିରାପଦ ହେବ । ସେ ଚାରିଜଣ ଅନୁଚରଙ୍କୁ ନେଇ ସମୁଦ୍ର ଉପର ଦେଇ ରାମଙ୍କ ଶିବିରକୁ ଚାଲିଗଲା ।

ସୁଗ୍ରୀବ ପ୍ରଥମେ ବିଭୀଷଣଙ୍କୁ ଦେଖି ଚିତ୍କାର କରି କହିଲେ, "ସୈନ୍ୟଗଣ, ଜଣେ ରାକ୍ଷସ ଏ ଆଡ଼କୁ ଆସୁଛି, ଶୀଘ୍ର ପ୍ରସ୍ତୁତ ହୋଇପଡ଼ ।"

ଭୟ ନ କରି ନିକଟକୁ ଆସି ବିଭୀଷଣ କହିଲା, "ମୁଁ ରାବଣର ସାନଭାଇ ବିଭୀଷଣ । ସୀତାଙ୍କୁ ଫେରାଇଦେବା ପାଇଁ ମୁଁ କହିବାରୁ ସେ ମୋ ଉପରେ ଏତେ କ୍ରୁଦ୍ଧ ହେଲା ଯେ ମୋତେ ଜୀବନ ବଞ୍ଚାଇ ଚାଲିଆସିବାକୁ ପଡ଼ିଲା । ରାମଙ୍କର ମୁଁ ଦର୍ଶନପ୍ରାର୍ଥୀ ।"

"ତାଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ । ତାର କିଛି ଖରାପ ଉଦ୍ଦେଶ୍ୟ ଥାଇପାରେ ।" ସୁଗ୍ରୀବ ରାମଙ୍କ ନିକଟକୁ ଯାଇ କହିଲେ ।

"ତାଙ୍କୁ ବିଶ୍ୱାସ କରିବା ପୂର୍ବରୁ ପରୀକ୍ଷା କରି ଦେଖିବା ଉଚିତ୍" ପ୍ରସ୍ତାବ କଲେ ଅଙ୍ଗଦ ।

ଆଉ କେତେଜଣ କହିଲେ, "ତାକୁ ମାର ! ତାକୁ ମାର ! ସେ ଆମକୁ ଧ୍ୱଂସ କରିବାକୁ ଆସିଛି ।"

ହନୁମାନ କେବଳ ଚିନ୍ତିତ ନ ହୋଇ କହିଲା, "ନା, ମୁଁ ଭାବୁଛି ତାକୁ ବିଶ୍ୱାସ କରାଯାଇପାରେ । ସେ ତା ନିଜର ସ୍ୱାର୍ଥସିଦ୍ଧି ପାଇଁ ଆସିଛି ଏବଂ ହୁଏତ ରାବଣକୁ ପରାସ୍ତ କରି ନିଜେ ରାଜସିଂହାସନରେ ବସିବାକୁ ଚାହେଁ ।"

ରାମ ଏଥିରେ ଏକମତ ହୋଇ କହିଲେ, "ମୁଁ ପ୍ରତିଜ୍ଞା କରିଛି ଯେ ମୋର ଶରଣାପନ୍ନ ବ୍ୟକ୍ତିକୁ ମୁଁ ସର୍ବଦା ସାହାଯ୍ୟ କରିବି । ତାକୁ ଏଠାକୁ ଆଣ । ଯଦି ସେ ନିଜେ ରାବଣ ହୋଇଥାଆନ୍ତା ତେବେ ବି ମୁଁ ତାକୁ ସାହାଯ୍ୟ କରିଥାଆନ୍ତି ।"

ତେଣୁ ବିଭୀଷଣକୁ ରାମଙ୍କ ନିକଟକୁ ଅଣାହେଲା ଓ ସେହି ମୁହୂର୍ତ୍ତରୁ ସେ ବିଶ୍ୱସ୍ତଭାବରେ ରାମଙ୍କ ସେବା କରିବାକୁ ଲାଗିଲା । ରାମଙ୍କୁ ସେ ଲଙ୍କା ବିଷୟରେ ବିଶଦ ବିବରଣୀ ଦେଇ ସେଠାକୁ କେଉଁ ଦିଗରୁ ଯାଇ ଆକ୍ରମଣ କରିହେବ ସବୁ ବିଷୟ କହିଲା ।

"ସମୁଦ୍ରର ଜଳଧାର ଯେଉଁଠି ସବୁଠାରୁ ସଂକୀର୍ଣ୍ଣ ତା ଉପରେ ସେତୁ ନିର୍ମାଣ କରି ଆପଣଙ୍କ ସୈନ୍ୟମାନେ ସମୁଦ୍ର ପାରହୁଅନ୍ତୁ ।"—ଉପଦେଶ ଦେଲା ବିଭୀଷଣ । ରାମ ତା'ପରେ ବିଭୀଷଣ ନିକଟରେ ପ୍ରତିଜ୍ଞା କରି କହିଲେ ଯେ ସେ ରାବଣକୁ ପରାଜିତ କରିବାରେ କୃତକାର୍ଯ୍ୟ ହେଲେ ବିଭୀଷଣ ଲଙ୍କାର ରାଜଗାଦିରେ ବସିବେ ।

ସେମାନେ ଗୋଡ଼ି, ପଥର, ଗଛ, ବାଲି, ମାଟି ଯାହା ହାତ ପାଖରେ ପାଇଲେ ସବୁ ନେଇ ସେତୁ ବାନ୍ଧିବା ଆରମ୍ଭ କଲେ । ଖୁବ୍ ଅଳ୍ପ ସମୟ ମଧ୍ୟରେ ସେତୁ ବନ୍ଧା ସରିଲା ଓ ରାମଙ୍କ ସୈନ୍ୟମାନେ ସମୁଦ୍ର ପାରହୋଇ ଲଙ୍କାକୁ ଯିବାକୁ ଆରମ୍ଭ କଲେ । ଖୁବ୍ ଭୟଙ୍କର ଯୁଦ୍ଧ ଆରମ୍ଭ ହେଲା । ଜଣକ ପରେ ଜଣେ ଉଭୟ ପକ୍ଷର ବୀର ସୈନିକମାନେ ଯୁଦ୍ଧରେ ପ୍ରାଣ ଦେଲେ । ରାବଣ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲା । ପରାକ୍ରମଶାଳୀ କୁମ୍ଭକର୍ଣ୍ଣ, ଯେ କି ଏକାସାଙ୍ଗେ ଛଅମାସ ନିଦ୍ରା ଯାଉଥିଲା ଏବଂ ଉଠିବାମାତ୍ରେ ବହୁତ ଭୋଜନ କରୁଥିଲା, ରଣଭୂମିରେ ପ୍ରାଣ ଦେଲା ।



ତାପରେ ରାବଣର ପୁତ୍ରମାନଙ୍କ ମଧ୍ୟରେ ସବୁଠାରୁ ଜ୍ୟେଷ୍ଠ, ସାହସୀ ଓ ବଳୀୟାନ ଇନ୍ଦ୍ରଜିତର ପାଳି ଆସିଲା । ତାକୁ ଦେବରାଜ ଇନ୍ଦ୍ର ମଧ୍ୟ ପରାଜିତ କରିବାକୁ ସକ୍ଷମ ହୋଇ ନ ଥିଲେ । ଲକ୍ଷ୍ମଣଙ୍କ ହାତରେ ତାର ପ୍ରାଣ ଗଲା । ବିଭୀଷଣ ସାହାଯ୍ୟରେ ଗୁପ୍ତଦ୍ୱାର ଦେଇ ଲକ୍ଷ୍ମଣ ରାବଣର ନିଭୃତ କକ୍ଷଗୁଡ଼ିକ ମଧ୍ୟରେ ପ୍ରବେଶ କରିପାରିଥିଲେ ।

ଯୁଦ୍ଧ ଶେଷ ହେଲାବେଳକୁ ରାବଣର ସ୍ୱର୍ଣ୍ଣଲଙ୍କା ଧ୍ୱଂସମୁଖରେ ପଡ଼ିସାରିଥିଲା । ତାର ସବୁଠାରୁ ପ୍ରିୟ ପୁତ୍ର ଇନ୍ଦ୍ରଜିତର ମୃତ୍ୟୁ ହୋଇଥିଲା । ଦୁଃଖରେ ନିଜର ବୁଦ୍ଧି ହରାଇ ରାବଣ ସୀତାଙ୍କୁ ଆକ୍ରମଣ କରିବାକୁ ଦୌଡ଼ିଗଲା ବେଳେ ସେ ମନ୍ତ୍ରୀମାନଙ୍କ ଦ୍ୱାରା ନିବୃତ୍ତ ହୋଇଥିଲା । ସେମାନେ କହିଲେ, "ବୀରପୁରୁଷ କେବେହେଲେ ନାରୀହତ୍ୟା କରେ ନାହିଁ । ରାମଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କରନ୍ତୁ ।"

ତେଣୁ ରଣଭୂମିରେ ରାମ ଓ ରାବଣ ପରସ୍ପରର ସମ୍ମୁଖୀନ ହେଲେ । ରାବଣର ଦୃଷ୍ଟି ରାମଙ୍କ ସପକ୍ଷରେ ଯୁଦ୍ଧ କରୁଥିବା ବିଭୀଷଣ ଉପରେ ପଡ଼ିଲା । ସେ ତାକୁ ବିଶ୍ୱାସଘାତକତା ପାଇଁ ଭର୍ତ୍ସନା କରି ତାର ପ୍ରାଣ ନାଶ କରିବା ପାଇଁ 'ଶକ୍ତିବାଣ' ନାମରେ ଐନ୍ଦ୍ରଜାଲିକ ଅସ୍ତ୍ର କ୍ଷେପଣ କଲା ।



ଲକ୍ଷ୍ମଣ ନିଜର ଦେହଦ୍ୱାରା ତାଙ୍କୁ ଆବୃତ କରି ରକ୍ଷା ନ କରିଥିଲେ ବିଭୀଷଣ ମୃତ୍ୟୁ-ମୁଖରେ ପଡ଼ିଥାଆନ୍ତା । ସେ ଅସ୍ତ୍ର ଲକ୍ଷ୍ମଣଙ୍କ ଶରୀର ଭେଦ କରିବାରୁ ରାମଙ୍କ ଚକ୍ଷୁରୁ ଅଗ୍ନି ଷ୍ଟ ଜାତ ହେଲା । ଲକ୍ଷ୍ମଣଙ୍କୁ ଅନ୍ୟମାନଙ୍କ ଦାୟିତ୍ୱରେ ଛାଡ଼ି ଦେଇ ରାମ ରାବଣର ସମ୍ମୁଖୀନ ହେଲେ ।

ସେହି ଉଭୟଙ୍କର ସଂଘର୍ଷ ଭଲ ଓ ମନ୍ଦ ମଧ୍ୟରେ ଶେଷ ଓ ଶକ୍ତିଶାଳୀ ଯୁଦ୍ଧ ଥିଲା । ଉଭୟ ପକ୍ଷର ଯୋଦ୍ଧାମାନେ ସେମାନଙ୍କର ଅସ୍ତ୍ର ରଖିଦେଇ ଯୁଦ୍ଧ ନିରୀକ୍ଷଣ କରିବାକୁ ଲାଗିଲେ । ସେମାନେ ପୂର୍ବରୁ କେବେହେଲେ ଏପରି ଉଭୟଙ୍କର ଯୁଦ୍ଧ ଦେଖି ନଥିଲେ । ଉଭୟ ପକ୍ଷର ଯୋଦ୍ଧାମାନେ ସେମାନଙ୍କର ସମସ୍ତ ଶକ୍ତି, ସାହସ ଓ ରଣକୌଶଳ ନେଇ ଯୁଦ୍ଧ କରିଥିଲେ ।

ଶେଷରେ ରାବଣର ପ୍ରାଣନାଶ ହେଲା । ରାକ୍ଷସମାନେ ପୃଷ୍ଠଭଙ୍ଗ ଦେଇ ପଳାୟନ କଲେ । ଲଙ୍କା ବଶତା ସ୍ୱୀକାର କଲା । ରାମଙ୍କର ବାନରସେନାଗଣ ଆନନ୍ଦରେ ଚିତ୍କାର କରିବାକୁ ଲାଗିଲେ । ରାମ ବିଭୀଷଣଙ୍କୁ କହିଲେ, "ହେ ବନ୍ଧୁ, ରାବଣର ଶବସତ୍କାର ସମ୍ପୂର୍ଣ୍ଣ ରାଜକୀୟ ଢଙ୍ଗରେ କରାଯାଉ । ମୁଁ ମଧ୍ୟ ସେଠାରେ ଉପସ୍ଥିତ ରହିବି । ମୃତ୍ୟୁପରେ କାହାର ସହିତ ଶତ୍ରୁତା ରଖିବା ଉଚିତ ନୁହେଁ ।"

ରାମ ତା'ପରେ ହନୁମାନଙ୍କୁ ଡାକି କହିଲେ, "ସୀତାଙ୍କ ନିକଟକୁ ଯାଇ ସବୁ ବିଷୟ ଜଣାଅ ।"

ସୀତାଙ୍କ ନିକଟରେ ଯେତେବେଳେ ରାମଙ୍କ ବିଜୟ ସମ୍ବାଦ ପହଞ୍ଚିଲା ସେ ଖୁସିରେ ଆତ୍ମହରା ହୋଇଗଲେ । ତତ୍‌କ୍ଷଣାତ ସେ ରାମଙ୍କ ସହ ଦେଖା କରିବାକୁ ଚାହିଁଲେ । କିନ୍ତୁ ରାମ ତାଙ୍କର ସ୍ତ୍ରୀ ସ୍ନାନ କରି ସୁରଭିତ ଓ ସୁନ୍ଦର ବସ୍ତ୍ର ଅଳଙ୍କାରରେ ଭୂଷିତ ହୋଇ ଆସିବାକୁ ଇଚ୍ଛା ପ୍ରକାଶ କରିଥିଲେ । ତେଣୁ ସୀତା ସ୍ୱାମୀଙ୍କ ସହ ସାକ୍ଷାତ କରିବାକୁ ପ୍ରସ୍ତୁତ ହେଲେ ।

ହନୁମାନ ସୀତାଙ୍କ ପ୍ରତି ଅତ୍ୟାଚାର କରିଥିବା ରାକ୍ଷସୀମାନଙ୍କୁ ଦେଖାଇ କହିଲା, "ଏମାନଙ୍କୁ ନେଇ କଣ କରାଯିବ ? ମୁଁ ସମସ୍ତଙ୍କୁ ମାରିଦେବି କି ?"

"ନା, ସେମାନେ କେବଳ ତାଙ୍କ ପ୍ରଭୁଙ୍କ ଆଜ୍ଞା ପାଳନ କରୁଥିଲେ ।" କହିଲେ ସୀତା ।

ଶେଷରେ ବର୍ଷକର ଦୁଃଖକଷ୍ଟ ଓ ବିଚ୍ଛେଦ ପରେ ରାମ ଓ ସୀତା ପରସ୍ପରକୁ ଭେଟିଲେ ।

# ରାମଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ବିଭୀଷଣ ଲଙ୍କାର ରାଜାରୂପେ ଅଧିଷ୍ଠିତ ହେଲେ । ସେ ରାମଙ୍କ ଭକ୍ତ ଥିବାରୁ ତାଙ୍କୁ ଲଙ୍କାରୁ ଛାଡ଼ିବାକୁ ଆଦୌ ଇଚ୍ଛା ନଥିଲା ।

"ଅନ୍ତତଃପକ୍ଷେ କିଛିଦିନ ପାଇଁ ଆପଣ ଏଠାରେ ଅବସ୍ଥାନ କରନ୍ତୁ," ନିବେଦନ କଲେ ବିଭୀଷଣ । ରାମ କହିଲେ, "ମୋର ଚଉଦ ବର୍ଷ ବନବାସ ଶେଷ ହୋଇଛି । ଭରତ ମୋ ପାଇଁ ଅଯୋଧ୍ୟାରେ ପ୍ରତୀକ୍ଷା କରୁଥିବେ ଏବଂ ମୁଁ ଯଦି ଠିକ ସମୟରେ ନ ପହଞ୍ଚେ ତେବେ ସେ ଅଗ୍ନିରେ ଝାସ ଦେଇ ପ୍ରାଣ ହରାଇବେ ।"

"ତେବେ ଆପଣଙ୍କ ସଙ୍ଗେ ଯାଇ ଆପଣଙ୍କ ଅଭିଷେକ ଦେଖିବାକୁ ମୋତେ ଅନୁମତି ଦିଅନ୍ତୁ ।"—କହିଲେ ବିଭୀଷଣ ।



ସୁଗ୍ରୀବ ମଧ୍ୟ ରାମଙ୍କ ସହ ଯିବାକୁ ଆଗ୍ରହୀ ଥିଲେ । ତେଣୁ ସେମାନେ ସମସ୍ତେ ରାବଣର ପୁଷ୍ପକ ବିମାନରେ ଅଯୋଧ୍ୟା ଫେରିଲେ । ଫେରିବା ସମୟରେ ବାଟରେ ପ୍ରୟାଗଠାରେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ସେମାନେ ରାତି ଯାପନ କରିଥିଲେ ।

ଭରତଙ୍କୁ ସେମାନଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ସମ୍ବାଦ ଦେବାକୁ ରାମ ହନୁମାନଙ୍କୁ ସେଠାରୁ ପଠାଇ କହିଲେ, "ତୁମେ ଭରତଙ୍କ ମୁଖକୁ ଭଲଭାବେ ନିରୀକ୍ଷଣ କରି ଦେଖିବ ସେ ପ୍ରକୃତରେ ଆମର ଆଗମନ ଯୋଗୁଁ ଆନନ୍ଦିତ କି ନୁହଁ । ସେ ରାଜ୍ୟ ରଖିବାକୁ ଚାହିଁପାରନ୍ତି । ଯଦି ଚାହାନ୍ତି ତେବେ ତାହା ସେ ରଖିପାରନ୍ତି ।"

ହନୁମାନ ଯେତେବେଳେ ଭରତଙ୍କୁ ଶୁଭ ସମ୍ବାଦଟି ଦେଲେ ଭରତ ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ । ତାଙ୍କର ପାତ୍ରମନ୍ତ୍ରୀମାନଙ୍କୁ ଡାକି ରାମଙ୍କ ଅଭ୍ୟର୍ଥନା ପାଇଁ ଆୟୋଜନ କରିବାକୁ ଆଦେଶ ଦେଲେ । ରାମ ଯେତେବେଳେ ନନ୍ଦୀଗ୍ରାମରେ ପହଞ୍ଚିଲେ ସେତେବେଳେ ତାଙ୍କୁ ସ୍ୱାଗତ ଜଣାଇବାକୁ ସମସ୍ତେ ପ୍ରତୀକ୍ଷା କରୁଥିଲେ । ରାମ, ଲକ୍ଷ୍ମଣ ଓ ଭରତ ନିଜର ସନ୍ନ୍ୟାସୀବେଶ ପରିହାର କରି, ପୁଣି ରାଜପୋଷାକ ପରିଧାନ କରି ତାଙ୍କର ଅନୁଚର ଓ ବନ୍ଧୁମାନଙ୍କ ସହ ଶୋଭାଯାତ୍ରାରେ ଅଯୋଧ୍ୟା ଫେରିଲେ ।

ଅଯୋଧ୍ୟାରେ ପୁଣି ଥରେ ଆନନ୍ଦ ଉତ୍ସବ ଲାଗିଲା । କୌଶଲ୍ୟା, ସୁମିତ୍ରା ଓ କୈକେୟୀ ସେମାନଙ୍କୁ ସ୍ୱାଗତ କରିବାପାଇଁ ଆଗ୍ରହର ସହିତ ଅପେକ୍ଷା କରିଥିଲେ ।

ଅଯୋଧ୍ୟାର ନାଗରିକଗଣ ସେମାନଙ୍କ ପ୍ରିୟ ରାମଙ୍କର ମୁଖ ଦେଖି ପୁଣି ଥରେ ଖୁସିରେ ଆତ୍ମହରା ହୋଇପଡ଼ିଲେ । ଅବିଳମ୍ବେ ଖୁବ୍ ଆଡ଼ମ୍ବର ସହକାରେ ରାମଙ୍କର ଅଭିଷେକ ହେଲା । ରାମ ପ୍ରଜାମାନଙ୍କୁ ଅନେକ ମୂଲ୍ୟବାନ୍ ଉପଢୌକନ ଦେଲେ । ରାମ ଦେଇଥିବା ଗୋଟିଏ ସୁନ୍ଦର ସ୍ୱର୍ଣ୍ଣମାଳା ସୀତା ହନୁମାନଙ୍କୁ ତାର ଭକ୍ତି ଓ ବୀରତ୍ୱ ପାଇଁ ଉପହାର ଦେଲେ ।

ରାମ ଅନେକ ବର୍ଷ ଧରି ଖୁବ୍ ଦକ୍ଷତାର ସହିତ ସୁଶାସନ କଲେ । ସେ ଜଣେ ଆଦର୍ଶ ଓ ସର୍ବଗୁଣସମ୍ପନ୍ନ ପୁରୁଷ ରୂପେ ପରିଗଣିତ ହୁଅନ୍ତି । ଆଜିପର୍ଯ୍ୟନ୍ତ ରାମରାଜ୍ୟ କହିଲେ ଦକ୍ଷ ଓ ନ୍ୟାୟସଙ୍ଗତ ଶାସନକୁ ବୁଝାଏ । ଯେଉଁଠାରେ ପ୍ରଜାମାନେ ଏକାନ୍ତ ସୁଖ ଓ ସମୃଦ୍ଧିରେ ବାସକରନ୍ତି ।

# ଏହି ପୁସ୍ତକମାଳାରେ ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକ

| | ଲେଖକ | ଅନୁବାଦକ |
|---|---|---|
| ବାପୁ (ଦୁଇ ରଙ୍ଗରେ) | – ଏଫ୍. ସି. ଫ୍ରାଏସ୍ | – ଦେବେନ୍ଦ୍ର ଶତପଥୀ |
| ଚାଙ୍ଗୁର | – ମାଳ ସିଂ | – ପ୍ରତାପ୍ ଦାସ (ଅଳକାନନ୍ଦା) |
| ପକ୍ଷୀ ଉତ୍ସବ | – ଜମାଲ ଆରା | – ଅଚ୍ୟୁତ ଦେବ |
| ଆମ ନଦୀମାନଙ୍କର କାହାଣୀ (ପ୍ରଥମ ଖଣ୍ଡ) | – ଲୀଳା ମଜୁମଦାର | – ଦେବେନ୍ଦ୍ର ଶତପଥୀ |
| ଆମ ନଦୀମାନଙ୍କର କାହାଣୀ (ଦ୍ୱିତୀୟ ଖଣ୍ଡ) | – ଅରୁ. ଭଟ୍ଟାଚାର୍ଯ୍ୟ | – ନୃସିଂହ ଚରଣ ସାହୁ |
| କୁକୁରୁ କୁଚ | – ଜାଗ ସିଂ | – ଜାନକୀବଲ୍ଲଭ ମହାନ୍ତି |
| ଆକାଶ ଓ ଆକାଶର କାହାଣୀ | – ମନୋଜ ଦାସ | – ମନୋଜ ଦାସ |
| ସ୍ୱର୍ଣ୍ଣ ଭ୍ରମଣ | – ଲାଲବତୀ ଭରତ୍ ରୂ | – ପ୍ରତାପ୍ ଦାସ (ଅଳକାନନ୍ଦା) |
| ଯେମାନେ ଦେଖିଥିବା ସପନ | – କେ. ସି. ଶାସ୍ତ୍ରୀ | – ଦେବେନ୍ଦ୍ର ଶତପଥୀ |
| ଆମ ଜେଜେବାପା | – ଜସବିର୍ ସିଂ | – ଅଚ୍ୟୁତ ଦେବ |
| ଘର ଚାଳର ଚଢ଼େଇ | – ଜମା ଆରା | – ବିଜୟଚନ୍ଦ୍ର ଦାସ |
| ଆମ ସହରର କାହାଣୀ (ପ୍ରଥମ ଖଣ୍ଡ) | – ବିଶ୍ୱ ପ୍ରଭାକର | – ବିଜୟ କୁମାର ଦାଶ |
| ଆମ ସହରର କାହାଣୀ (ଦ୍ୱିତୀୟ ଖଣ୍ଡ) | – କୁମାରସ୍ ପ୍ରକାଶ | – କୁନ୍ତଳା ପଟ୍ଟନାୟକ |
| ବିଶେଷ ଭାରତ ପରିବାର | – ଏମ୍. ଡି. ଚତୁର୍ବେଦୀ | – ଚନ୍ଦ୍ରପ୍ରଭା ହେମନ୍ତ ମିଶ୍ର |
| ଅଦ୍ଭୁତ ଦିନ ଚଳେ (ପ୍ରଥମ ଖଣ୍ଡ) | – ଏମ୍. ସ୍ୱେତସି ଓ ଡି. ଏମ୍. ଘୋଷ | – ଜାହ୍ନବୀ ଚରଣ ପାଣିଗ୍ରାହୀ |
| ଅଦ୍ଭୁତ ଦିନ ଚଳେ (ଦ୍ୱିତୀୟ ଖଣ୍ଡ) | – " | – ବିରେନ୍ଦ୍ର ନାରାୟଣ ପଟ୍ଟନାୟକ |
| ଯୁଗ ଯୁଗର କାହାଣୀ | – ଶାନ୍ତା ରଙ୍ଗାସ୍ୱାମୀ | – ବିଜୟ କୁମାର ଦାଶ |
| ଗେହ୍ଲା ଓ ନାଚ୍ରିୟ | – କୃଷ୍ଣ ଚୈତନ୍ୟ | – କୋଠା ମିଶ୍ର |
| ବରପାନି | – ଲୀଳା ମଜୁମଦାର | – ଜୀବନ ପାଣି |
| ଜାହସିଙ୍ଗାର କାହାଣୀ | – ଉପେନ୍ଦ୍ର ଅରୋରା | – ସ୍ନେହଲତା ରାୟ |
| ପୁର ଓ ମନ୍ଦୁମାଛି | – ଅଶୋକ ଡାଭର୍ | – ବିଜୟ କୁମାର ଦାଶ |
| ମୋର | – ମୁକୁନ୍ଦର ଆନନ୍ଦ | – ସ୍ନେହଲତା ରାୟ |
| ଜଙ୍ଗଲରେ ହଟିଗୋଳ | – ସୁରେନ୍ଦ୍ର ସାହାନୀ | – ନୃସିଂହ ପ୍ରସାଦ ମିଶ୍ର |
| ଅଯୋଧ୍ୟାର ଯୁବକ | – ହଂସା ମେହେତା | – ମିନ୍ତା ଦାସ |
| ଚମର ସାହିତ୍ୟ | – ମନୋଜ ଦାସ | – ମନୋଜ ଦାସ |
| ବୃକ୍ଷ ଜଗତ | – ଭଗିନ୍ ଦାଶ | – ଗଙ୍ଗାଧର ଦାସ |
| ଅଭିମନ୍ୟ | – ମେରଲିନ୍ ଡିମିଲେ | – ରମେନ୍ଦ୍ର ଦାସ |
| ସୋନାର ବାହନ | – ତାର ଚିଓ୍ୱାଲା | – ଶାନ୍ତି ଦାସ |
| ସବୁଜି ବାଠା, ସବୁଜି ମିଳ | – ଉମାଶଙ୍କର ଯୋଶୀ | – ଚନ୍ଦ୍ରିକା ମହାପାତ୍ର |
| କୁଟା | – ମିଭି ପଟେଲ୍ | – ବିଜୟକୁମାର ଦାଶ |
| କେତୋଟି ପୁରାତନୀ ଉପକଥା (ଦୁଇ ରଙ୍ଗରେ) | – ମିତ୍ର ମହାଦେବ୍ ବର୍ମା | – ସନ୍ତୋଷ ପ୍ରସାଦ ସିଂହ |
| ଆଉ ପିଦା ଦେଖି ତିଡ଼ିଆଣା | – ରସିକ୍ ଦାଶ | – ରମାପ୍ରସାଦ ମହାନ୍ତି |
| ଲେଡ଼ବଡ଼ର କାହାଣୀ | – ଭୀଷ୍ମ ସହାନୀ | – ବଳେନ୍ଦ୍ରକୃଷ୍ଣ ଧର |
| ତିମେନ୍ | – ବିଜୟ ମର୍ଚେଣ୍ଟ | – ରବି ସାହୁ |
| ଡାକଟିକଟର ମନୋହର କାହାଣୀ | – ସତ୍ୟ ପ୍ରସାଦ ସୁଟୋରିଆ | – ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି |
| ଭାରତ ଜିତିଲା ସ୍ୱାଧୀନତା ପାଇଁ | – କୃଷ୍ଣ ଚୈତନ୍ୟ | – ରାମ ପ୍ରସାଦ ମହାନ୍ତି |
| ଏକ ଜଟିଳ ସ୍ୱପ୍ନ | – ମହାଶ୍ୱେତା ଦେବୀ | – ବିଜୟଚନ୍ଦ୍ର ଦାସ |
| ଆମ ନୌବାହିନୀ | – ଆର୍. ଏନ୍. ସୁରତି | – ନୃସିଂହ ଚରଣ ସାହୁ |
| ଘିଲେନା କେମିତି ହୁଏ | – ଖ୍ୱାଜା ଅହମେଦ ଅବ୍ବାସ | – ଘନଶ୍ୟାମ ମହାପାତ୍ର |
| ଆମ ବାୟୁ ସେନା | – ପି. ଏଲ୍. ପ୍ରାକଟୁଟ୍ | – ନିତ୍ୟଶ କିଶୋର କାନୁନ୍ଗୋ |
| ହେମନ୍ତ | – ଅମୃତ ରାୟ | – ପ୍ରଫୁଲ୍ଲ କୁମାର ତ୍ରିପାଠୀ |
| ଚିଲର୍ ଦଳ | – ଜମା ଆନନ୍ଦ | – ରାମ ପ୍ରସାଦ ମହାନ୍ତି |

ପ୍ରତ୍ୟେକ ବହିର ମୂଲ୍ୟ ଟ 2.50

ଏହି ପୁସ୍ତକଗୁଡ଼ିକ ୧୨ଟି ଭାରତୀୟ ଭାଷା ଓ ଇଂରାଜୀରେ ମିଳୁଛି ।

Published by Director, National Book Trust, India, A-5, Green Park, New Delhi-110 016, and printed at Roland Press (India) Pvt. Ltd., B-214, Okhla Industrial Area, Phase I, New Delhi-110 020.

